



ପ୍ରାଚୀ ଗ୍ରନ୍ଥମାଳା ତ୍ରିଂଶ

# ଚଉତିଶା-ମଧୁଚକ୍ର




ପ୍ରାଚୀ ସମିତି

# ଚଉତିଶା-ମଧୁଚକ୍ର

( ଦ୍ୱିତୀୟ ଖଣ୍ଡ )

---

ପ୍ରାଚୀ ସମିତି ପକ୍ଷରୁ

**ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବି: ଏ: ଙ୍କ**

ଦ୍ୱାରା ସଙ୍କଳିତ

ଓ

ଚଉତିଶା ଚନ୍ଦ୍ରିକା ଟୀକା ସହ

ସମ୍ପାଦିତ

---

ପ୍ରକାଶକ :—

**ପ୍ରାଚୀ ସମିତି, କଟକ**

ମୂଲ୍ୟ ଆଠଅଣା

# ମୁଖବନ୍ଧ

ମଧୁଚକ୍ରର ପ୍ରଥମଖଣ୍ଡର ମୁଖବନ୍ଧରେ ଚଉତିଶାଶ୍ରେଣୀୟ କବିତାର ପ୍ରକୃତି ଆଲୋଚିତ ହୋଇଅଛି । ଏ ଚଉତିଶା, ଏ ଚଉପଦୀ, ଏ ଛାନ୍ଦ ଉତ୍କଳର ସମସ୍ତ ପୁରାତନ କବିତାମାନଙ୍କର ପ୍ରାଣ, ସଙ୍ଗୀତ । ଛନ୍ଦାଲଙ୍କାର ବିଭୂଷିତ ହୋଇ କବିତା ଆକାରରେ ଭାବ ଉପସ୍ଥିତ ନ ହେଲେ ତାହା ଉତ୍କଳୀୟଙ୍କ ପ୍ରାଣରଞ୍ଜନ କରୁ ନ ଥିଲା । ଯେଉଁମାନେ ଉତ୍କଳଜାତିକୁ ସମୂହ ଭାବରେ ଦେଖନ୍ତି, ବ୍ୟଷ୍ଟି ଭାବରେ କେତେକ ଲୁପ୍ତ-ସ୍ୱାତନ୍ତ୍ର୍ୟ ବିଦେଶୀ ଭାବାନୁପ୍ରାଣିତ ବ୍ୟକ୍ତିଙ୍କୁ ଦେଖି ସମଗ୍ର ଜାତିର ଧାରଣା କରନ୍ତି ନାହିଁ, ସେମାନେ ଅବଶ୍ୟ ଅବଗତ ଯେ ଉତ୍କଳୀୟ-ପ୍ରାଣ ଉପରେ ଏହି ସଙ୍ଗୀତ-ପ୍ରିୟତା ଓ ଛନ୍ଦ-ବିଳାସ-ପ୍ରବଣତାର ପ୍ରଭାବ ସଦାସର୍ବଦା ଅକ୍ଷୁଣ୍ଣ । ବିଶେଷ କହିବା ବାହୁଲ୍ୟ, ସ୍ୱାମୀ ଗୃହ-ଗମନୋଦ୍ୟତା ଉତ୍କଳ କୁମାରୀର କ୍ରନ୍ଦନ ମଧ୍ୟ ଛନ୍ଦ-ବଦ୍ଧ । ତେଣୁ ସଙ୍ଗୀତର ଦିବ୍ୟ ଉପାଦାନରେ ଗଠିତ ଏହି ଗ୍ରନ୍ଥ-ସନ୍ନିବିଷ୍ଟ ଚଉତିଶା ଗୁଡ଼ିକ ପୂର୍ବବତ୍ ଆଜି ଯେ ଉତ୍କଳୀୟ ନର ନାରୀଙ୍କ ହୃଦୟ-ତନ୍ତ୍ରୀକୁ ତାଳେ ତାଳେ ନଚାଇବ, ଏ ଆଶା ଆମ୍ଭମାନଙ୍କ ପକ୍ଷେ ସ୍ୱାଭାବିକ ।

ରାଧାନାଥ—ଯୁଗର ସଙ୍ଗୀତହୀନ କବିତାର ଉତ୍କଟ ପ୍ରଭାବ ବହୁବିଧ କାରଣରୁ ଏହି କଳାପ୍ରାଣ ସଙ୍ଗୀତପ୍ରିୟ ଦେଶକୁ ଗ୍ରାସ କରି ରହିଅଛି । ତା' ଉପରେ ବଙ୍ଗାଗତ ବାଉଁଶା ପ୍ରଭାବ ଉତ୍କଳର

ଜାତୀୟ ସାହିତ୍ୟ ଉପରେ ତାର ଅସ୍ୱାସ୍ଥ୍ୟକର ଛାୟାପାତ କଲାଣି । ଯେଉଁମାନେ ଏ ଜାତିର ନାଡ଼ି ଠିକ୍ ଚିପିଅଛନ୍ତି ସେମାନେ ଅବଶ୍ୟ କହିବେ, ଏହି ସବୁ ପ୍ରଭାବ ବିରୁଦ୍ଧରେ ଜାତିର ଛୃଦ୍ଧ ଅନ୍ତରାତ୍ମା ଧୀର ସ୍ପଷ୍ଟ ଭାବରେ ଅଦୃଶ୍ୟ, ଅଶବ୍ଦ ଅଥଚ ଗୋଟିଏ ନିଶ୍ଚିତ ବିଦ୍ରୋହର ଆୟୋଜନ କରୁଅଛି ।

ଯେଉଁସବୁ ସାହିତ୍ୟିକ-କଳା-କାରୁକାର୍ଯ୍ୟ-ମଣ୍ଡିତ ଉତ୍କଳର ପ୍ରାଣର ଗୀତ ଦିନେ ଉତ୍କଳୀୟଙ୍କ କଣ୍ଠର ହାର ଥିଲା ଓ କାଳର କୁଟିଳ ଗତି ପ୍ରଭାବରେ କଣ୍ଠରୁ ଅପସାରିତ ହୋଇ ବିସ୍ମୃତିର ସୂକ୍ଷ୍ମ ଅନ୍ଧକାରରେ ପଡ଼ିଥିଲା, ଚଉତିଶା-ମଧୁଚକ୍ରରେ ସେ ଗୁଡ଼ିକର ପୁନରୁଦ୍ଧାର ହୋଇଅଛି । ଦ୍ୱିତୀୟ ଖଣ୍ଡର ଗୋଟିଏ ଗୀତକୁ ଛାଡ଼ି ସମସ୍ତ ଗୀତ ଆଧୁନିକ ଉତ୍କଳୀୟଙ୍କ ନିକଟରେ ନୂତନ । ଯୁକ୍ତି-ନିର୍ବିଶେଷରେ ଯେଉଁସବୁ ମାଧୁର୍ଯ୍ୟମୟ, ଲଳିତ ଗୀତ ଜାତିର ହୃଦୟ-କନ୍ଦରରେ ଅନୁକୂଳ ପ୍ରତିଧ୍ୱନି ଉଠାଇବାକୁ ସକ୍ଷମ, ମଧୁଚକ୍ରର ପ୍ରତ୍ୟେକ ଗୀତ ସେହି ଶ୍ରେଣୀର । ପୁରାତନ ଗୀତରେ ନୂତନ ଭଙ୍ଗୀ ବିଶିଷ୍ଟ ନବୀନ ଭାବ ଆଶାକରିବା ବୃଥା । ତେବେ ନବୀନ ଭାବ ପ୍ରକାଶ ନିମନ୍ତେ ଜାତୀୟ-ରୁଚି-ଅନୁମୋଦିତ ସରଣୀ ଓ ଭଙ୍ଗୀ ଯୋଗାଇବାରେ ସଂକଳିତ ଚଉତିଶା ଗୁଡ଼ିକ ଯେ ଅତୀବ ପ୍ରଶସ୍ତ କହିବା ନିଷ୍ପ୍ରୟୋଜନ ।

ଉତ୍କଳଜାତିର ହୃଦୟ ଭୋଗାଲୋକ ଯୌତ ପ୍ରାସାଦରେ କେବଳ ଆବଦ୍ଧ ନୁହେଁ । ଯେଉଁ କବି ଉତ୍କଳର 'ଅଭାବ' ପୂର୍ଣ୍ଣ କରିବା ନିମନ୍ତେ ପ୍ରୟାସୀ, ସୁଦୀନ କୁଟୀର ପାଇଁ ସେବା ତାଙ୍କୁ କବିତାର ମଧୁର ସମ୍ଭାର ଯୋଗାଇବାକୁ ହେବ । ଆମ୍ଭମାନଙ୍କର ଦୃଢ ବିଶ୍ୱାସ, ଚଉତିଶା ସବୁ ଯେଉଁ ଅର୍ଥରେ ଜାତୀୟ କବିତା,

ସଙ୍ଗୀତହୀନତା ଯୋଗେ ରାଧାନାଥ ଯୁଗର କବିତା ଓ ରାଧାନାଥ ପରଯୁଗର ବିଦେଶୀ ଛାଞ୍ଚଢଳା ନବୀନ କବିତା କେହିହେଲେ ସେ ଅର୍ଥରେ ଜାତୀୟ କବିତା ହୋଇ ପାରିବେ ନାହିଁ । ସେଥିଯୋଗୁଁ ହିଁ ସେମାନଙ୍କ ବିରୁଦ୍ଧରେ ଜାତିର ଅନ୍ତରାତ୍ମାର ଶଂସିତ ବିଦ୍ରୋହ ସଜ୍ଜା । ଯେଉଁମାନେ ଜାତୀୟ ଭାବରେ ଅନୁପ୍ରାଣିତ, ଏହି ବିଦ୍ରୋହସଜ୍ଜାକୁ ପୁଷ୍ଟ ଓ ବଳିଷ୍ଠ କରିବା ସେମାନଙ୍କର ଅବଶ୍ୟ କର୍ତ୍ତବ୍ୟ । ଚନ୍ଦ୍ରଭାଗା-ମଧୁଚକ୍ର ଏହି ଜାତୀୟ କର୍ତ୍ତବ୍ୟରେ ଯେ ସେମାନଙ୍କର ସମ୍ୟକ୍ ସହାୟକ ହେବ, ଏହା ନିର୍ଦ୍ଦ୍ୱନ୍ଦରେ ଘୋଷିତ ହୋଇ ପାରେ ।

ପ୍ରାଚୀ କର୍ମ ଭବନ
ଗଣେଶଘାଟ, କଟକ
୧୦।୭।୬୧

ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ

# ଚଉତିଶା ମଧୁଚକ୍ର

## ଦ୍ୱିତୀୟ ଖଣ୍ଡ

# ସୂଚୀପତ୍ର

---



---

# ଆର୍ତ୍ତତ୍ରାଣ ବା ଜଣାଣ ଚଉତିଶା

ପ୍ରବାଦ ଅଛି ଗରୁଡ଼ ସ୍ତମ୍ଭ ନିକଟରେ ଜଗନ୍ନାଥଙ୍କ ଭକ୍ତ ଶ୍ରୀମୁଖଙ୍କୁ ଅନାଇଁ ଭକ୍ତକବି ଏହି ଆର୍ତ୍ତତ୍ରାଣ ଚଉତିଶା (ଅନ୍ୟନାମ ଜଣାଣ ଚଉତିଶା) ତୁରନ୍ତ ରଚନା କରି ଗାନ କରିଥିଲେ ଓ ଫଳରେ ଦୁରାରୋଗ୍ୟ କୁଷ୍ଠବ୍ୟାଧିରୁ ମୁକ୍ତିଲାଭ କରିଥିଲେ । ଏହାଠାରୁ ହୃଦୟସ୍ପର୍ଶୀ ଜଣାଣଗୀତିକା ଅନ୍ୟ ଯେ ଉତ୍କଳ ସାହିତ୍ୟରେ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଲଜ୍ଜାହରଣଠାରୁ ଏହା ଯେ କେତେ ଭାବିଲେ ହୃଦୟରେ ନୟନ-ବାରି ଯୋଗେ କାରୁଣ୍ୟ ଭାବ ଧରିବି ନାହିଁ ।

( ରାଗ କାମୋଦୀ )

କୃପାସିନ୍ଧୁ ବଦନ      କର ଅବଲୋକନ  
କହୁଁ କର୍ମହୀନ ଜନ  
କାଳୁସ୍ତରର ହୋଇ      କର ଯୋଡ଼ି ଜଣାଇଁ  
ଗରୁଡ଼-ସ୍ତମ୍ଭ ସନ୍ନିଧାନ ହେ  
ମହାପ୍ରଭୁ !  
କୃପା-ସଉଡ଼-ପଡ଼ ହୋଇ  
କର୍ମହୀନଜନର ତହିଁ  
କରୁଣା କଲ ନାହିଁ      କିପାଁ ହେ ଭବଗ୍ରାହୀ  
କହ ମୁଁ ବଞ୍ଚିବ ମଣଇଁ ହେ । ୧ ।

୧-୩—କାତ୍ୟୁତର ହୋଇ ( ଗ )

୧-୨—କର୍ମହୀନ ଜନ ମୁହିଁ ( ଖ )

ଖିଳବ୍ରହ୍ମାଣ୍ଡୋଦରେ କର୍ମହୀନ ଜନରେ
ଯେଣୁ ମୋ ସମ ଆନ ନାହିଁ
ଖଗଧ୍ୱଜକ-କାନ୍ତ ତ କାରଣୁ ଏମନ୍ତ
ଖେଦ ଅରତେ କହୁଅଛି ହେ
ମହାପ୍ରଭୁ !
ଖଣ୍ଡିଲ ନାହିଁ ଯେଣୁ ମୋର
ଖେଦ-ଅରତ-ରତ୍ନାକର
ଖିଳ ବ୍ରହ୍ମାଣ୍ଡୋଦରେ ଖଣ୍ଡି ନାହିଁ କାହାରେ
କହୁଁ ବପଦ ବଣ୍ଟମୂର ହେ । ୨ ।

ଗଜରାଜଙ୍କୁ ଜଳେ ଗ୍ରାହ ଗ୍ରାସିଲା କାଳେ
ଡାକିଲା ରଖ ଆଦିମୂଳ
ଗରୁଡର ଅଙ୍ଗ ଜାଣି ତାର ଶ୍ରୀରଙ୍ଗ
ରଥାଙ୍ଗ ପେଷିଲ ତତ୍କାଳ ହେ
ମହାପ୍ରଭୁ !
ଗ୍ରାହ ଜୀବନେ ନବାରଲ
ଗଜ ଦୁର୍ଗତିରୁ ତାରଲ
ଗରୁତ୍ମାନ-କେତନ ମୋହ କର୍ମକୁ ହୀନ
ନରାଶ-ନୀରନିଧି ହେଲ ହେ । ୩ ।

୨-୨—ଖେଦ କରୁଣା ରତ୍ନାକର ( ଖ )
୩-୧— ଗ୍ରାହ ଗ୍ରାସିବା କାଳେ ( ଖ ) ୩-୩—ଜାଣିଣ ତା ଶ୍ରୀରଙ୍ଗ ( ଖ )
୩-୨—ଗରୁଡ଼ ବପଣ୍ଡ ତାହିଲ ( ଖ ) ୩-୭ – ମୋହୋ କର୍ମରୁ ଏବେ ( ଖ )

ଘନଶ୍ୟାମ ହେ ଘନ— ବିପଦ ବିନାଶନ
ବିସ୍ମରି ଥାଇ ମନେ ମୋର
ଘୋର ବିପତ୍ତି ଘର କେତେ ମାଧ ଯାହାର
ପ୍ରଭୁ ମହିମା-ଅକୂପାର ହେ
ମହାପ୍ରଭୁ !
ଘନେ ଏ କଥା ମନେ ଥିଲା
ଘୃଣା କି କାରଣେ ନୋହିଲା
ଘୋର ସଙ୍କଟ ମୋର ହୋଇ ଘଟ-କୁମର
ମହିମା-ବାରିଧି ଶୋଷିଲା ହେ । ୪ ।

ନିରେଖ ନିସ୍ତାରଣ କାରଣେ ପ୍ରହରଣ
କର-କମଳରେ ବହୁଛ
ନିଧନ ସମୟରେ କିପାଁ ମୋ ବିଷୟରେ
ନିର୍ଦ୍ଦୟ-ହୃଦୟ ହୋଉଛ ହେ
ମହାପ୍ରଭୁ !
ନୀଳାଚଳରେ ତୁମ୍ଭେ ଥିବ
ନିଶ୍ଚେଁ ନିରେଖ ନାଶ ଯିବ
ନିଖିଳ-ନିକେତନ ନବ-ପଞ୍ଚ-ଭୁବନ
ମଧ୍ୟେ ଏ କେମନ୍ତ ଦଶିବ ହେ । ୫ ।

୪-୧—ବିପତ୍ତି ବିନାଶନ ( କ ) ୪-୩—କେତେ ମାଧର ଯାହା ( କ )
୪-୮—ଘୋର ବିପତ୍ତି ଘର ହୋଇ ଘଟ କୁମର ମହିମା ବାରିଧି ଶୋଷିଲ ( ଖ )
୫-୩—ସମୟରେ ନିରସ୍ତ ଜନଠାରେ ( ଖ ) ୫-୫—ନିରସ୍ତ ଜନ ନାଶ ଯିବ ( ଖ )
୫-୯—ମଧ୍ୟରେ କେମନ୍ତ ଶୁଝିବ ( ଖ )

ଚତୁର୍ବର୍ଗ ଯାହାର ଚରଣେ ପରିଗ୍ରର
ଚଞ୍ଚଳା ଯାର ଆଜ୍ଞାକାରୀ
ଚାହିଁ ଯାହା ଶ୍ରୀମୁଖ ଚ୍ୟୁତ ଦୁରିତ ଦୁଃଖ
ସେ ପ୍ରଭୁ-ଚିତ୍ୟହିଁ ଉକାରୀ ହେ
ମହାପ୍ରଭୁ !
ଚତୁର୍ଦ୍ଦଶ ଭୁବନ ପ୍ରାଣୀ
ଚକିତ ହେବେ ଏହା ଶୁଣି
ଚନ୍ଦ୍ର ନୋହଇ ଏହୁ କଥା ହେ ମହାବାହୁ
ନୀଳଶଇଳ-ଚୂଡ଼ାମଣି ହେ । ୭ ।

ଛାଡ଼ି ସକଳ ଆଶ ତୁମ୍ଭ ପାଦ-ସାରସ
ଭରସା କରିଛି ମନ୍ତରେ
ଛେଉ ସାଗରେ ପଡ଼ି ମରିବା କାଳେ ବୁଡ଼ି
ଛାଡ଼ି ତ ଦେଉଅଛ ମୋତେ ହେ
ମହାପ୍ରଭୁ !
ଛତ୍ର ମଣ୍ଡଳେ ତୁମ୍ଭ ବିନା
ଛଣେ କେ ଅଛି ଆନ ସେହ୍ନା
ଛନ୍ନ ନୋହେ ଚିତ୍ତ କହୁଛି ପ୍ରଭୁ ସତ୍ୟ
ନଷ୍ଟେଁ ଏତେବେଳକୁ ପିନା ହେ । ୮

୭-୨—କମଳା ଯାର (କ), ଅଙ୍କ କର (ଗ) ୭-୩—ଚାହିଁ ଯାହାର ମୁଖ···ସେ
ପ୍ରଭୁ ରଖ ଅବହାରୀ (କ) ୭-୮—ଚନ୍ଦ୍ର ନୋହେ ଏ ଏହୁ କଥାହେ (ଗ)
୭-୧୦—ନୀଳାଦ୍ରି ଚନ୍ଦ୍ର ଚୂଡ଼ାମଣି (କ) ୮-୭—କ୍ଷଣକେ ଅଛି ବନ୍ଧୁ ସେହ୍ନା (ଗ)
୮-୮—ଛତ୍ର ନୋହେ ଚିତ୍ତ (ଖ) ପ୍ରଭୁ ଭରି (କ)

ଜଗତ ଅନୁରାଗେ ଜାତ ଅବମାଭାଗେ

ଦଇବେ ଜଗତର ନାଥ

ଜଗତ ଜନଙ୍କର ଭିତରୁ କି ବାହାର?

ମୁହିଁ କି କାରଣେ ଅନାଥ? ହେ

ମହାପ୍ରଭୁ!

ଜଗନ୍ନାଥ ନାମ ବହିବ

ଜନ-ଆରତ ନ ଶୁଣିବ

ଜଗତପତି ହୋଇ ଅନାଥ ଜନଠାଇଁ

ଅଉ ନେ କାଅଗେ କହିବ ହେ ।୮।

ଝୁଲନ୍ତୁ ଏ ବଚନ ନବ ଯଷ୍ଠ ଭୁବନ

ଆରତ ଭଞ୍ଜନ ଶ୍ରୀହରି

ଝଙ୍କା ମଣୁଅଛ କାହିଁ ମୋ ହୃଦପୁରେ

ଦନାଶ କାଳେ ଦଇଡାଉ ହେ

ମହାପ୍ରଭୁ !

ଝାଡ଼େ ଡାକିଲା ଗର୍ଭୀ ଏଣୀ

ଝାଡକାରେ ତା ବାଣୀ ଶୁଣି

ଝିମିଟେଁ ସେ ବିପଉ ହରିଲ ହେ ଶ୍ରୀପତି

ମୋରେ ନିର୍ଦ୍ଦୟ କାହିଁ ପୁଣି ହେ ।୯।

୮-୧—ଜଗତ ଅନୁରାଗେ (କ) ୮-୩—ଭିତରୁହିଁ ବାହାର (ଖ),

୮-୪—ମନ କି କାରଣେ (କ)

୯-୭ ଝଡ଼ରେ ତା ଡାକ ଶୁଣି (ଖ)।

ଞସ୍ମଣ ଥିଲେ ଚିତ୍ତେ   କହ ହେ ପ୍ରଭୁ ମୋତେ
ମୋ ଜୀବ ପ୍ରତିଆଶା ତୁଟୁ
ଞଣ୍ଟେ କରୁଣାନିଧି   ହେଲେ ନିର୍ଦ୍ଦୟ ବୁଦ୍ଧି
ବୋଲି ତ୍ରିଭୁବନେ ପ୍ରକଟୁ ହେ

ମହାପ୍ରଭୁ !

ଞଣ୍ଟେଁ ନିର୍ଦ୍ଦୟ ହେବ ଯେବେ
ନିଖିଳ ଅଉ କିଛି ଥିବେ
ନାଗ–ନୃପତି, ସୁର,   ସମୀର, ନିଧିଧର
ଯେ ଯାହା ସତ୍ୟକୁ ଲଙ୍ଘିବେ ହେ । ୧୦ ।

ଟିକାଏ ବିଲମ୍ବିତ   ନକର ପଣ୍ଡୁସୁତ
ଯୋଗିଲ ସଙ୍କଟୁ ତାରିଲ
ଟେକି ଦୁଃସହ ଘୋର   ଦାରିଦ୍ର୍ୟ ସୁଦାମାର
ଦର୍ଶନ ମାତ୍ରକେ ହରିଲ ହେ

ମହାପ୍ରଭୁ !

ଟେକ କରୁଣା କଟାକ୍ଷରେ
ଟିକାଏ ବିଲୋକିଲେ ମୋରେ
ଟଳିବ କି ମହିମା   ଅପାର ସୁଖସୀମା
ଏମନ୍ତ ବିଶ୍ୱର ମନରେ ହେ । ୧୧ ।

୧୦-୧—ନ ଥିଲେ ଦୟା ଚିତ୍ତେ ( ଖ ) । ୧୦-୩—ହେଲେ ନିର୍ଦ୍ଦୟ ନିଧି ( ଗ ) ।
୧୦-୬—ଞଟେଁ ନିର୍ଗୁଣ ହେବ ଯେବେ (କ) । ୧୦-୮—ସୁର ସପତନିଧି ଧର (ଙ) ।
୧୧-୭—ଟିକାଏ ବିଲୋକ କି ମୋରେ ( ଙ )
୧୧-୮—ଟଳିବଟି ମହିମା ଶୁଣି ହେ ସୁଖ ସୀମା ( ଙ )

ଠାବ ନ କଲ ଚିତ୍ତେ
କଉଁ ଦୋଷକୁ ମୋତେ
ନାଶ କରୁଛ ଗୋସାଇଁ !
ଠାକୁର ହୋଇ ଉଚିତ୍ୟ—
ଠାରେ କଲେ ଏମନ୍ତ
ଆଉ ତାହାର ଗତି କାହିଁ ହେ
ମହାପ୍ରଭୁ !

ଠୁଲ ବିପତ୍ତି ଦେଖି ମୋର
ଠିକେ ବା କରୁଛ ଅନ୍ତର
ଠଣ ପଦ୍ମଚରଣ
ହନୁ ପ୍ରତିକାରଣ
ଅଛି କେ ବ୍ରହ୍ମାଣ୍ଡ ଭିତର ହେ । ୧୨ ।

ଡେଉଥିଲ ତ୍ରିବଣ
ଗଜ ଅଦ ବ୍ରହ୍ମଣ
ଡାକଲା ମାତ୍ରକେ ଶୁଣିଲ
ଡୋଳାଗୋଚରେ ଥାଇ
ଡାକିଲେ ଶୁଣ ନାହିଁ
କର୍ଣ୍ଣ—କୁହର କି ମୁଦିଲ ହେ
ମହାପ୍ରଭୁ !

ଡାକ ବାଜୁଛି ଜଗତରେ
ଡାକିଲେ ନ ଶୁଣ କର୍ଣ୍ଣରେ
ଡରିଲ କି ମୋହର
ବିପଦ ଦେଖି ଘୋର
ଡେଣ୍ଡି ବା ନ ଶୁଣ ବାଦ୍ୟରେ ହେ । ୧୩ ।

୧୨-୪—ଅଉ କାଅରେ କହିବଇଁ (ଗ) ୧୨-୭—ଠିକେ ବା କରୁଛ ଦୂର (ଖ) ।
୧୨-୯—ଅଛିକେ ବ୍ରହ୍ମାଣ୍ଡଠାକୁର ( ଖ ) । ୧୩-୩—ଡାକିଲେ ନ ଶୁଣଇ ( ଗ ) ।
୧୩-୫ – ଡାକ ପଡୁଛି ( ଗ ) । ୧୩-୭—ଡାକିଲେ ନ ଶୁଣ କର୍ଣ୍ଣରେ ( ଖ ) ।

ତାଲେ ତୁମ୍ଭ ବାହାରେ    ଅଛି କେ ବ୍ରହ୍ମାଣ୍ଡରେ
କା'ଆଗେ କହିବି ମୁଁ ଆଉ
ତାଲେ ବିପଦାର୍ଣ୍ଣବେ    ଭାସୁଛି ଭୃତ୍ୟ ଏବେ
ତୁମ୍ଭ ପରାୟେ ପ୍ରଭୁ ଥାଉଁ ହେ
ମହାପ୍ରଭୁ !
ତମାଳି ପ୍ରାୟେ ମୋ ଉତ୍ତର
ତାଲେ ନ ମଣ ଚକ୍ରଧର
ତଳ ଯାଉଛି ଜୀବ    ଦେଇ କରୁଣା-ନାବ
ଉଦ୍ଧର ଧରି ବିଶ୍ୱମ୍ଭର ହେ । ୧୪ ।

ଅହେ ହେ ମହାବାହୁ    ବିପଦ-ଚନ୍ଦ୍ର-ରାହୁ
ଆଜ୍ଞା ଯେ ଦେଇଛ ଶ୍ରୀମୁଖେ
ଇତର ଜନ ହେଲେ    ଆରତରେ ଡ଼ାକିଲେ
ଆତଙ୍କ ନ ସହଇ ଦେଖେ ହେ
ମହାପ୍ରଭୁ !
ଆଉ ଆରତ ମୋହପରେ
ଅଛି କେ ବ୍ରହ୍ମାଣ୍ଡ ଭିତରେ ?
ଆରତଜାଣ ତାହା    ଜାଣ ହେ ଚଉବାହା
ପ୍ରତେ ତ ନାହିଁ ମୋ ମନରେ ହେ । ୧୫ ।

୧୪-୩—ଭାସି ମୁଁ ଯାଉଅଛି ( କ ) ।
୧୪-୮—ନ ଯାଉ ଜୀବ ( କ ) ୧୫-୧—ବିପତ୍ତିଚନ୍ଦ୍ର ରାହୁ ( ଖ )
୧୫-୩—ଆରତ ଜନ ( ଘ ) ।
୧୫-୯—ପ୍ରତ୍ୟୟ ନାହିଁ ମୋ ମନରେ ( ଘ ) ।

ତୁମ୍ଭେ ତ୍ରିତାପହର ତ୍ରିଭୁବନ-ଈଶ୍ୱର
ପତିତଜନ-ନିସ୍ତାରଣ
ତେଣୁ ମନେ ମୋହର ଭରସା ନିରନ୍ତର
ଯେଣୁ ମୁଁ ପତିତ-ଭୂଷଣ ହେ
ମହାପ୍ରଭୁ !

ତଥାପି କରୁଣାନିଧାନ
ଚାହିଁ ନ କଲେ ଦୀନଜନ
ତେଣୁ ତୁମ୍ଭର ଦୀନ— ବନ୍ଧୁ-ନାମ-କେତନ
ତେଜ ତ୍ରିଭୁବନ-ମୋହନ ହେ । ୧୬ ।

ଥୟେ ନୋହୁଛି ମନ ଯେସନେ ବଜ୍ରର ଘନ
କମଳଦଳ-ବନ ପ୍ରାୟେ
ଥିଲ ଯେଉଁ ପ୍ରଭୁଙ୍କୁ ଆଶା ଉଦ୍ଧରିବାକୁ
ଦେଖି ସେ ପ୍ରଭୁର ନିର୍ଦ୍ଦୟେ ହେ
ମହାପ୍ରଭୁ !

ଥିଲେ କି ଅଛୁ ବ୍ରହ୍ମାଣ୍ଡରେ
ଅନ୍ୟ ବା କେ କରିବ ମୋରେ
ସ୍ଥିତ ଭବ ପ୍ରଳୟେ ଯାହା ଆଜ୍ଞାରୁ ହୋୟେ
ସେ ପ୍ରଭୁ ନ ରକ୍ଷିଲା ଠାରେ ହେ । ୧୭ ।

୧୬-୧—ତ୍ରିଲୋକ ତାପକି ସେତ ( କ ) । ୧୬-୨—ପତିତଜନ ନିସ୍ତାରଣ ( ଖ ) ।
୧୬-୩—ତେଣୁ ମୋ ଭରସା ଥାଇ ମୋ ନିରନ୍ତରେ (ଖ)
୧୭-୧—ଥୟେ ନୋହଇ ମନ ( ଖ )
୧୭-୨—କମଳଦଳ ବନ ( ଖ ) ।
୧୭-୩।୪—ସ୍ଥିତି ଭବ ପ୍ରଳୟ ଯାହା ଆଜ୍ଞାରୁ ହୋଇ ସେପ୍ରଭୁ ନରକ୍ଷିଲେ ଠାରେ (ଖ) ।

ଦୟାସାଗର ବୋଲି ଦମ୍ଭ ଟେକି ଭଜିଲି
ଅମ୍ଭୁଜ-ଚରଣେ ଭ୍ରମର
ଦେଲେ ଯାର ବିରୁଧ— ପତିପଦ ବିଶୁଦ୍ଧ
ମୋ କର୍ମେ ଦୟାହିଁ ଦୁସ୍ତର ହେ
ମହାପ୍ରଭୁ ।

ଦୀନବନ୍ଧୁ ନାମ ଭ୍ରମର
ତ୍ରିସପ୍ତ ଲୋକରେ ଯେ ସାର
ଦେଖୁ ଦେଖୁ ଦୁର୍ଗତି ଦଣ୍ଡ ଦେଉଛ ଅତି
ଏ ଦୟା ହୋଇବ କାହାର ହେ । ୧୮ ।

ଧରନ୍ତି ଏଡୁ ଦୁଃଖ ମନେ ହେ ପଦ୍ମମୁଖ !
ଅଜସ୍ର ପଙ୍କରେ ପଶିଲେ
ଧରି ଦାରୁଣ ମୂର୍ତ୍ତି ହୋଇ ସଙ୍କୋଚ ଅତି
ବିଷମ ବିଷାଦ ଗ୍ରାହିଲେ ହେ
ମହାପ୍ରଭୁ !

ଧରି ଯା ନାମ ହୃଦୟରେ
ଧ୍ରୁବ ପ୍ରହ୍ଲାଦ ନିସ୍ତରେ
ଧରି ଏଡୁ ଭରସା ପତିତ ପ୍ରତିଆଶା
କରୁଛି ରଜନୀବାସରେ ହେ । ୧୯ ।

୧୮-୭—ତ୍ରିସପ୍ତ ଲୋକରେ ହେ ସାର (ଢ) ।
୧୯-୬—ଧରି ଯାହା ନାମ ମନରେ (ଖ) ୧୯ —ଧ୍ରୁବ ପ୍ରହ୍ଲାଦ ନିସ୍ତରିଲେ (ଙ)
୧୯-୮—ଅଛିଛି ଏହୁଆଶା (ଢ)

ନଗୃହ ସଙ୍କଟକୁ      ପେଷ ଦୁର୍ଦ୍ଦିନକୁ
ଏବେ କି କାରଣେ ନ ପେଷ
ନଷ୍ଟେଁ ନରେଖ ନାଶ      ଗଲେ ହେ ହୃଷୀକେଶ !
ଏଥି କି ଅଛି ପଉରୋଷ ହେ
ମହାପ୍ରଭୁ !

ନ ସହୁ ଆଉ ତ ବିଲମ୍ବ
ନିସ୍ତାରିଲ ନୃପକଦମ୍ବ
ନୟନ ସମ୍ମୁଖରେ      ନରେଖ ଜନତାରେ
ଏବେ କି କାରଣେ ବିଲମ୍ବ ହେ । ୨୦ ।

ପରମର ସକଳ      ଆଶା ହେ ଅଦମୂଳ !
ପଶିଛୁ ଶରଣ ଭୂମିରେ
ପ୍ରଭୁ ତ ଅବସର      କର ଦେଉଛୁ ଘୋର
ପ୍ରଚୁର ସଙ୍କଟ ମୁଖରେ ହେ
ମହାପ୍ରଭୁ !

ପଶାପର ଭୂମିର ନାହିଁ
ପରମଦୟାଳୁ ଗୋସାଇଁ
ପଉଡପଡ ହୋଇ      ପଉଡଜନନହିଁ
ଏତେ ନିର୍ଦ୍ଦୟ କାହିଁପାଇଁ ହେ । ୨୧ ।

୨୦-୩—ନିତ୍ୟେ ନିରସ୍ତ ନାଶ (ଗ) ।

୨୦-୬—ନିସ୍ତାରିଛ ନୃପ କଦମ୍ବ (ଗ)

୨୦-୮—ନିରଖ ଜନ ଠାରେ (ଗ) । ୨୧-୨—ପଶୁଛି ଶରଣ ଭୂମିରେ ( ଖ ) । ।

୨୧-୪—ଦାରୁଣ ସଙ୍କଟ ମୁଖରେ ( ଖ ) ।

ଫେଡ଼ି କହିବ କେତେ          ଭରସା ଅଛୁ ଯେତେ
ତୁମ୍ଭ ଶ୍ରୀଚରଣେ ମୋହୋର
ଫୁଲ୍ଲେନ୍ଦୀବରେକ୍ଷଣ !          ତାହା ତ ତୁମ୍ଭେ ଜାଣ
ଜାଣି କରୁଛ କିମ୍ପା ଦୂର ହେ
ମହାପ୍ରଭୁ !

ଫନ୍ଦା ମୁଁ କରଛି ତୁମ୍ଭଙ୍କୁ
ଫାଇ ଦୁସ୍ତରୁ ତରିବାକୁ
ଫଣୀ-ଶୟନ ଧ୍ୟାନ—          ବାନ୍ଧବ ହୋଇ ଯନ୍ତ
କରୁଛି ନରେଶ ଜନଙ୍କୁ ହେ । ୧୨ ।

ବନକ-କରେ ଯାନ—          ଚରଣ ବିଲୋକନ
କର ପ୍ରମୋଦ ହୋଉଥାଇଁ
ବିଷମ ସମୟରେ          ମୋହେ ପକ୍ଷପାତରେ
ପ୍ରତିକାର କରିବାପାଇଁ ହେ
ମହାପ୍ରଭୁ !

ବିଷମ ସଙ୍କଟ ପଡ଼ନ୍ତି
ବାରେ କି ତନ୍ତ ନ ଭେଦନ୍ତି
ବନାଶିବାରୁ ଗାଢ଼          ସଙ୍କଟମାନ ଦାଢ଼
ତନ୍ତ ତ ବନ୍ଧଙ୍କୁ ଭଞ୍ଜନ୍ତି ହେ । ୧୩ ।

୧୨-- ୨ଯାଇ ସମାର ( କ ), ଯାଇ ଦୁସ୍ତରୁ ( ଖ )

୧୨-୯—ନ କର ନରେଶ ଜନକୁ ( ଖ ) । ୧୩-୨—ଖଳ ପକ୍ଷପାତରେ ( କ ) ।

୧୩-୪—ବେକେ ତ ତନ୍ତୁ ( କ )

୧୩-୮—ସଙ୍କଟମାନ ଦାଢ଼ ତନ୍ତ୍ର କ ବନ୍ଧୁକୁ ଭଞ୍ଜନ୍ତି ( ଖ ) ।

ଦ୍ରୁପଦୀର ହରଣେ ପଞ୍ଚତ ନିସ୍ତାରଣେ
ଭୃତ୍ୟଜନ ତାରିବା ପାଇଁ
ଛବେ ନୀଳକନ୍ଦରେ ବସି କରଉଛ କରେ
କମ୍ବୁଚକ୍ର-ଭୂଷିତ ହୋଇ ହେ
ମହାପ୍ରଭୁ !
ଭକ୍ତବତ୍ସଳ ତୁମ୍ଭ ବାନା
ଭବ-ଭୟକୁ ବଜ୍ରସେନା
ଭବ-ସାଗରେ ଯେବେ ଭୃତ୍ୟ ବୁଡ଼ିବ, ଏବେ
ସେ ଜନା ତୁମ୍ଭଙ୍କୁହିଁ ସିନା ହେ । ୧୪ ।

ମହାପ୍ରଭୁ ଅନ୍ତର କଲେହେଁ ତ ମୋହୋର
ତୁମ୍ଭ ବିନା ଦୋସର ନାହିଁ
ମୃଗଧୂତ ଚକୋର ଚାତକ ଜଳଧର,
ମୀନ ଜୀବନ ପ୍ରାପ୍ତେ ହୋଇ ହେ
ମହାପ୍ରଭୁ !
ମୋରେ ଯେବେ ଦୟା ନୋହିବ
ମୋ ଜୀବ ଷଣେ ନ ରହିବ
ମହତ କର କହୁ— ଅଛୁ ହେ ସଦାବାନ୍ଧୁ !
ସବୁର ସଂଶୟ ରହିବ ହେ । ୧୫ ।

ଯେ ନାମ ସୁମରଣେ ମରଣ ଭୟ ଷଣେ
ନୋହେ ଦଣ୍ଡଧର ଦଣ୍ଡରୁ

୧୪-୧—ଦ୍ରୌପଦୀର ହରଣେ···ଭୃତ୍ୟଙ୍କୁ ଉଦ୍ଧାରିବା ପାଇଁ (ଚ) ! ୧୪-୩।୪—ନନ୍ଦସୁତ କରଉଛ କରେ ଚକ୍ରଭୂଷିତ (ଚ) ୧୫-୧—ସେ ନାମ (ଚ) ଯାହା ନାମ ସ୍ମରଣେ ମରଣ ଭୟ କ୍ଷଣେ (ଖ)

ଜଗତ ନିସ୍ତାରଣ          ଥାଉ  ଏତେ ଦାରୁଣ
ହୋଇଲ ବିପଦ-କାଣ୍ଡକୁ ହେ
ମହାପ୍ରଭୁ !
ଜୀବ ଯିବାର ବଡ଼ ସୁଖ
ଜୀଇବା ସମ ନାହିଁ ଦୁଖ
ଯାହା! ସାମନ୍ତ ଗୃହ—          ବର୍ଗରେ ଅଧିକାରୀ
ତାର ସେବକର ଏ ଦୁଃଖ ହେ । ୧୬ ।

ସ୍ଵୀବପଦ ଯାର          କରେ ପାଷାଣ ନର
ଶୋକ କଳୁଷ ନିବାରଣ
ଭକ୍ତ ପ୍ରାଣେକ ତାର          ପରଶ୍ଵର ହେବାର
ଏ ନିଜ ପ୍ରଭୁଙ୍କୁ ଦୂଷଣ ହେ
ମହାପ୍ରଭୁ !
ରମା ଯାହାର ପ୍ରିୟବନ୍ତୀ
ରସାଦ ତ୍ରୈଲୋକ୍ୟର ପତି
ଭତଏ ତ ସୁନର          ନୋହିଲା ଏ ଉତ୍ତର
ଏ ନିଜ ପ୍ରଭୁଙ୍କର ଖାତ ହେ । ୧୭ ।

୧୬-୪—ଜୀଇବାଠାରୁ ନାହିଁ (ଗ) ।
୧୬-୮—ଯାହା ସାମନ୍ତ (କ) ଗ୍ରହିବର୍ଗରେ ଅଧିକାରୀ (ଖ)
୧୭-୧—ପାଷାଣ ହୋଏ ନର (କ) ।

ଲଲାଟର ଲେଖନ　　　　କେ କର ପାରେ ଆନ
ଏମନ୍ତ ଅଜ୍ଞା ଦେବ ଅବା
ନତ ତୁମ୍ଭଙ୍କୁ ପତି　　　　କର ହେ ରମାପତି !
କାହିଁ ଛପି ଅଦରବା ହେ
ମହାପ୍ରଭୁ !
ଲୀଳା ମାନସେ ଏ ସଂସାର
ଲୀଳାପୂତା ପ୍ରାପ୍ତେ ସଂହାର
ଲୋକ କର୍ମକୁ ଏନ୍ତୁ　　　　କଥା ହେ ମହାବାହୁ
ଏମନ୍ତ ବର୍ତ୍ତର ମନର ହେ । ୧୮ ।

ବଚନ କର ଗୁରୁ—　　　　ପୁତ୍ର ଶମନ ପୁରୁ
ଉଷିତ ମାନସେ ଅଣିଲ
ବାଂଶକର ଅମର—　　　　ବର କର ବଧୂର
ବନାଶି ବଧିକ ଜଣିଲ ହେ
ମହାପ୍ରଭୁ !
ବିଷମ ସଙ୍କଟୁ ଉଦ୍ଧର
ଦୁଃଖ ସଂସାରୁ କର ପାର
ବିଶେଷେ ବାଞ୍ଛାନିଧି　　　　ବାଞ୍ଛା କର ପ୍ରସିଦ୍ଧି
ବୋଲି ବହୁତ ବାଞ୍ଛା ମୋର ହେ । ୧୯ ।

୧୮-୧—ଅଜ୍ଞା ଦେବ ଅବା (କ) । ୧୮-୩—ତୁମ୍ଭଙ୍କୁ ଗତି (ଙ) ।
୧୮-୮।୯—ଲୋକ କର୍ମେ କ ଚିନ୍ତୁଁ ଡରେ ହେ ମହାବାହୁ କପାଁ ଏ କଥା ନ ବର୍ତ୍ତର (କ) । ୧୯-୨ – ଉଷିତ ମାନସେ ଅଣିଲ (ଖ) । ୧୯-୩—ବନ୍ଧ କରିଣ ଦୂର (ଙ) ୧୯-୬—ପାରି କର(ଖ) ।
୧୯-୮—ବାଞ୍ଛାକର ପ୍ରସିଦ୍ଧି ବୋଲି (ଙ) ।

ଶେଷ ବିରଞ୍ଚି ଶିବ ସୁର ଆଦି ବାସବ
ଶୁକ ଶନକ ସନାତନ
ସେବେ ଯେଉଁ ପଦ୍ମରେ କୋଟି ଲକ୍ଷ ଅଂଶରେ
ମୁଁ ଦାସ ପଶେ କି ଭଜନ ହେ
ମହାପ୍ରଭୁ !
ସବୁ ଭରସା ଅଛି ଏଣୁ
ଶରଣ ନିସ୍ତାରଣ ଯେଣୁ
ଶୁଣିଅଛି ଅନ୍ତର କଥାଏ ଚିତ୍ତ କର
ସୁମେରୁ ସମ କର ରେଣୁ ହେ । ୩୦ ।

ଶୁଣି ତୁମ୍ଭ ଭରସା ଷଣ୍ଡାମ ନାମେ ଆଶା
ସେବୁଛି ତୁମ୍ଭ ଶ୍ରୀଚରଣେ
ସୁଖ-ସାଗର ହୋଇ ଦୁଃଖ-ସାଗରେ ନେଇ
ମେଲି ଦେଉଛ କି କାରଣେ ହେ
ମହାପ୍ରଭୁ !
ସେବୁଛି ତୁମ୍ଭ ପାଦ ଦୁଇ
ଶୋକ-ସିନ୍ଧୁ ତରିବା ପାଇଁ
ଶିଶ୍ନବସ୍ତ୍ରଲଞ୍ଛନ କର ପ୍ରଭୁକାରଣ
କରୁଣା କଟାକ୍ଷେ ଅନାଇଁ ହେ । ୩୧ ।

୩୦-୬—ଯେଉଁ ପଦ୍ମରେ (୪)
୩୧-୮—ଶ୍ରୀବତ୍ସ ଲକ୍ଷଣ (ବ) ।

ସେବକ ଦୋଷ କର          ପ୍ରଭୁ କୋପକୁ ଡର
ଯେବେ ଡରସି ନ କହିବ
ଶୁଣ ମହିମାମେରୁ          ଏ ଦୁଃଖ-ଜଳଧିରୁ
କେମନ୍ତ ପ୍ରକାରେ ତରିବ ହେ
ମହାପ୍ରଭୁ !
ସର୍ବାନ୍ତ ପୁରୁଷ ଗୋସାଇଁ
ସକଳ ଜୀବ ହୃଦେ ଥାଇ
ସେବକ ଦୁଃଖ ଜାଣି          ଦୟା ନ କଲେ ପୁଣି
ଆଉ ଜାଣନ୍ତା ଅଛି କେହି ହେ । ୩୨ ।

ହୃଦରେ ଅଛି ମୋର          ଏହୁ ଭବସାଗର
ତରିବ ତୁମ୍ଭ ମହିମାରୁ
ହୋଇ ଅଛି ସଂଶୟେ          ଯେଣୁ ମୋର ବିଷୟେ
ଅକରୁଣା ମହିମାମେରୁ ହେ
ମହାପ୍ରଭୁ !
ହୋଇଲା କର୍ମ ମୋ ବଇର
ହୃଦୟ ନୋହିଲା ମୋହୋର
ହେଉ କର୍ମତ ତୁମ୍ଭେ          ତେଣୁ କରୁଣ ଦମ୍ଭେ
ଗୁହାରି କଲି ଦଇତାରି ହେ । ୩୩ ।
କ୍ଷମାସାଗର ଏହି          କଥାକୁ ସିନା ମୁହିଁ
ଶ୍ରମୁଟରେ ଜଣାଉଛି ବାରେ

୩୨-୩—ସେ ଦୁଃଖ-ଜଳଧି (ଗ) । ୩୨-୬—ଅଛି କାହିଁ (ଢ)
୩୩-୧—ଏ ସଂସାର ସାଗର (ଙ)

ଘଣେହେଁ ଯନ୍ତୁଁ ମନ ନୋହିଲା ତୁମ୍ଭ ଧ୍ୟାନ
ଗୁଣଗାୟନମାନଙ୍କରେ ହେ
ମହାପ୍ରଭୁ !
କ୍ଷୋଭ ଯେବେ ମନେ ନୋହନ୍ତା
ଘଣେ ତ୍ୱ ନାମକୁ ଷ୍ଟଡନ୍ତା
ଷ୍ଟର ଦୀନ ପାମର କୃଷ୍ଣ କଷ୍ମାଇ ଷ୍ଟର
ଭବ–ସାଗରକୁ ତରନ୍ତା ହେ, ୩୪ ।



୩୪-୧—ଷମାସାଗର ବୋଲ ଛମ୍ଭରେ ସିନା ମୁହିଁ ଜଣାଇଅଛି ଏଣୁ ବାରେ (ଖ)
୩୪-୨—ଷଣେହେଁ ମୋହ ମନ (କ)
୩୪-୮—ଘର ଦୀନ ପାମର କୃଷ୍ଣ କମାଇ ଏହି (ଢ)

# ଘନଶ୍ୟାମ ଚଉତିଶା

---

ମଥୁରା ପ୍ରୟାଣ ନିମନ୍ତେ ରଥାରୂଢ଼ ଶ୍ରୀକୃଷ୍ଣଙ୍କ ଦର୍ଶନରେ ଭଗ୍ନହୃଦୟା ଲୋତକ-ଧୌତଲୋଚନା ଗୋପିକାଗଣଙ୍କ ଖେଦ ଏହି ଚଉତିଶାରେ ଗୋପୀକୃଷ୍ଣ ଅସାମାନ୍ୟ ଦକ୍ଷତା ସହ ଫୁଟାଇ ଅଛନ୍ତି । କମନୀୟ ଉପମା-ସ୍ୱର୍ଣ୍ଣ-କିଙ୍କିଣୀରେ ଅଳଙ୍କୃତ ହୋଇ ଏହି ଚଉତିଶା କବିତା-ଲତିକାଟି ଅନାୟାସରେ ଜନମନ ହରଣ କରୁଅଛି । ଉତ୍କଳ ସାହିତ୍ୟର ଶ୍ରେଷ୍ଠ-ଗର୍ଭ କବିତାମାନଙ୍କ ମଧ୍ୟରେ ଏ ଚଉତିଶାଟିର ସ୍ଥାନ ଯେ ଅତି ଉଚ୍ଚ କହିବା ବାହୁଲ୍ୟ ମାତ୍ର । ପରିତାପର ବିଷୟ ଏହା ଅଦ୍ୟାବଧି ଲୋକଲୋଚନର ଅନ୍ତରାଳରେ ଥିଲା ।

(ରାଗ—କାମୋଦୀ)

କୃଷ୍ଣ କଂସ ନଗର ଯିବା ଦେଖି କାତର
ସକଳ ବରଜ ସୁନ୍ଦରୀ
କାକୁସ୍ତ ହୋଇ ଧୀରେ କର ନିବେଶି ଶିରେ
କହନ୍ତି କୋମଳତା କରି ହେ
ଘନଶ୍ୟାମ !
କରୁଣା-କୃପଣ ହୋଉଛ
କଂସ-ଭୁବନକୁ ଯାଉଛ
କଇତବ ନ କର କହ ଧର୍ମ ବିଚାର
ଆମ୍ଭଙ୍କୁ କାହାକୁ ଦେଉଛ ହେ । ୧ ।

୧-୧—ଯିବା ଶୁଣି (ଶ)

ଖଳ ରାହୁବଦନେ ଅମୃତ ଦେଲ ପ୍ରାପ୍ତେ

କାମମୁଖେ ଅମୃକ୍ତ, ଦେଇ

ଖଣ୍ଡି ସମସ୍ତ ସୁଖ ମଣ୍ଡନ କର ଦୁଖ

ସକ ହୋଇଛ ଯିବା ପାଇଁ ହେ

ଘନଶ୍ୟାମ !

ଖାଇ ମରନ୍ତୁ ଅବା ବିଷ

ଖଣ୍ଡି ତ ଅଛ ତାହା ଦୋଷ

ଖୁଆଇ ସୁଧାକର ଅମୂଲ୍ୟ ମନୋହର

ରଙ୍ଗିମା ଅଧରୁ ପୀୟୂଷ ହେ । ୨ ।

ଗଲା ମର୍କତ ମାଳ ଗଳାରେ ଥାଇ ଯେବେ

ସର୍ପ ପାଲଟି ପ୍ରାଣ ନେବ

ଗଣ୍ଡି ସୁବର୍ଣ୍ଣ ଯେବେ ଅପକୃଷ୍ଟ ହୋଇବ

ତେବେ କେ କାହାରେ କହିବ ? ହେ

ଘନଶ୍ୟାମ !

ଗାଢ଼ ସଙ୍କଟ-ମୁଖୁଁ ରଖି

ଗୋକୁଳ କରଅଛ ସୁଖୀ

ଗୁରୁ କର୍ଣ୍ଣ ହୋଇଲ ଯାଗ ପଶୁ ପରାୟେ

ଅନ୍ତର୍ଦ୍ଦଶା ହିଁ ଦେଉଅଛ ହେ । ୩ ।

ଘଡ଼ିଏ ନ ଦେଖିଲେ ଘନଶ୍ୟାମ ବଦନ

ଘରହିଁ ହୋଏ ବନପ୍ରାୟେ

ଘାର ହୁଅଇ ଅଙ୍ଗ ଅନଙ୍ଗ ଭୁଜଙ୍ଗମ

ଘାଉଡ଼ ଲାଗିବା ପରାୟେ ହେ

୪-୧—ଘଳ ଯେ ମଣୁ (ଚ)

୪-୪—ଘନ ଘାରୁ ଲାଗିଲା ପ୍ରାପ୍ୟେ (ଖ)

ଘନଶ୍ୟାମ !

ଘେନାଇ ନାହିଁ ମନେ ସୁଖ

ଘନ ଘନ ପଡ଼ାଇ ଦୁଖ

ଘେନଗଲେ ତୁମ୍ଭଙ୍କୁ        କଂସଦୂତ ଅମ୍ଭଙ୍କୁ

ଢଂସପୁତ କରବ ପାଖ ହେ । ୪ ।

ଜଣ୍ଟେ ଜାଣିଲୁ ଅମ୍ଭେ        ରସାଳ ପ୍ରାୟେ ତୁମ୍ଭେ

ଜଗତ ଜନ ମନ ତୋଷ

ନାନାରୂପେ ମଧୁର        ନୟନ-ପ୍ରିୟ-କର

ହୃଦରେ ଅତ୍ୟନ୍ତ କର୍କଶ

ଘନଶ୍ୟାମ !

ନାହିଁ ତୁମ୍ଭର ଦୟା ଲେଶେ

ନାଶୁଛ ଅମ୍ଭଙ୍କୁ ବ ଦୋଷେ

ନୋହୁଁ ଅମ୍ଭେ ପୂତନା—        ପ୍ରାୟେ କୁଟିଳମନା

ସ୍ନେହିଁ ମଣ୍ଡି ନାହୁଁ ବଶେ ହେ । ୫ ।

ଚନ୍ଦ୍ରେ ଚକୋର ନବ—        ଘନେ ଚାତକ ପ୍ରାୟେ

ତୁମ୍ଭ ବିନୁ ନ ଜାଣୁ କିଛି

ଚନ୍ଦ୍ରେ ଚକୋର ସବୁ—        ପ୍ରକାରେ ବଶ୍ୟରଲେ

ଏହି ଦୋଷଟି ମାତ୍ର ଅଛି ହେ

ଘନଶ୍ୟାମ !

୪-୧—ଢଂସ ଦୂତ କରିବ (ଖ)

୫-୩—ନାନାରଙ୍ଗେ (ଖ) ନୟନ ସୁଖକର (ଖ)

ଚଣ୍ଡାଳ ଦଇବ କଷଣି
ଚଉଦ ଲୋକର ଭୂଷଣି
ଚନ୍ଦ୍ରାମଣିଙ୍କ ଦେଇ ଚନ୍ଦ୍ରା ମନେ ଦେଉଛୁ
ଏ କଉଁ ଅବିବେକ ପଣ ହେ । ୬ ।

ଛଣ ଛଣିକ କଥା ପ୍ରସଙ୍ଗେ ପ୍ରାୟେ ବ୍ୟଥା
ହୋଇଲା ଅମୃତ ଅଥୟେ
ଛୋଭ ଯାଗୁଛିରେ ମନ ପଡ଼ିଲେ ଚଇତନ
ମଇବାକୁ କରଛୁ ଭୟେ ନହେ
ଘନଶ୍ୟାମ !
ଛୁରି ମାରିଲା ପ୍ରାୟେ ଦେହ
ଛଣି ଛଣକେ ହୋଇୟେ ମୋହ
ଛାୟା-ପତିହିଁ ଥାଉଁ ଅନ୍ଧାର ହୋଉଅଛୁ
ଏ କଉଁ ବିଷୟାଦ କହ ହେ । ୭ ।

ଯେଉଁ ଶ୍ୟାମ-ରତନ କରି ଅଛି ଯତନ
ରଖିଲୁ ହୃଦ ସଂପୁଟକେ
ଜାଣୁ ଜାଣୁ ଅକ୍ରୂର ନ୍ୟାମକୁ ବହି କ୍ରୂର
ପ୍ରାୟେ ତା ନେଉଛୁ ଛଳକେ ହେ
ଘନଶ୍ୟାମ !
ଯହିଁ ନୃପତି ଅବିବେକ
ଜାଣିଲୁଁ ସେ ନଗର ଲୋକ

୬-୭—କ୍ଷୋଭ ହୋଇ ହେଉଛି (କ)
୮-୯—ସ୍ୱାମୀ ରତନ (ଖ)

ଜୀବନ ଧନ ଦୂର          ଥିଲେହେଁ ସୁଖ ନାହିଁ
ମନ୍ଦା ଭସ୍ମରେ ଦହ ଦହ ହେ । ୮ ।

ଝାଡ଼େ ମଧୁ ମକ୍ଷିକା          ମଧୁ ସଞ୍ଚୟ ପ୍ରାୟେ
ଯତନେ ତୁମ୍ଭଙ୍କୁ ସଞ୍ଚିଲୁ
ଛିମିଣ୍ଟହେଁ ନ ଛୁଉ          ମଧୁର ରସେ ବୃତ
ରଜନୀ ଦିନ ବାନ୍ଧିଥିଲୁ ହେ
ଘନଶ୍ୟାମ !
ଝାଡ଼-ବାସୀ ପରାୟେ ଆସି
ଝାମ୍ପି ଅକ୍ରୂର ଅଚ୍ଛୁ ବସି
ଷଟ୍ପଦ ସେବାଯିବ          ଆମ୍ଭ ଭାଗରେ ହେବ
ଝସକେଭୁ ଅନଲରାଶି ହେ । ୯ ।

ନାନା ଶ୍ରମେ କୃଷକ          କୃଷି କରି ଅନେକ
ପ୍ରକାରେ କରିଥାଇ ଆଶ
ନୃପତି ଲୋକ ଆସି          ଫଳ ମୁଖରେ ବସି
ସବୁ ଆଶ କରଇ ନାଶ ହେ
ଘନଶ୍ୟାମ !
ନିରେଖି ବରଜ ଯୁବତୀ
ନଷ୍ଟେ ହୋଇଲୁ ସେହ୍ନ ମତି
ଆଶା କରେ ଯେ ଯାହା          ନାଶ କରେ ଯେ ତାହା
ଯାଏ ତା ସକଳ ସଂପତ୍ତି ହେ । ୧୦ ।

୯.୮ —ଷଟ୍ପଦ ସେବିଯିବ (ଗ)
୧୦.୪ — ସ୍ତୁ ଅନ୍ଧ (ଘ)

ଟିକାଏ ନ ଦେଖିଲେ ଟାଣ କୁସୁମ ଶରେ

ଶରୀରେ ପାଉଥାଉଁ ବ୍ୟଥା

ଟେକ ଯାଚକ ଆଗେ କୃପଣ ଲୋଭୀ ପ୍ରାୟେ

ମଥା ନ ଟେକି ଛଦ୍ମ କଥା ହେ

ଘନଶ୍ୟାମ !

ଟଳ ସେନେହ ଗଲା କାହିଁ

ଟିକାୟେ ଏବେ ଦୟା ନାହିଁ

ଟେକି କରୁଣା-ବୃକ୍ଷେ ନୈରାଶ ଫଳାଇଲ

ବିଧାତାବଡ଼ପଣ ଏହୁ ହେ । ୧୧ ।

ଠାବ ନ କର ଥିଲୁ ଏବେ ସେ ଠାବ କଲୁ

ଠାକୁର ମାନଙ୍କରଖାଇ

ଠାଠିକ କର ଯେତେ ଯେତେ କଦନ୍ତ୍ରି ତେତେ

ରଖା ତ ନ କନନ୍ତ୍ରି ଗାଇ ହେ

ଘନଶ୍ୟାମ !

ଠାଠିକ ଭାଗ୍ୟ ଆମ୍ଭ ଯେତେ

ଠିକ ଅଭାଗ୍ୟ ପୁଣି ସେତେ

ଠୁଳ ନାଥଙ୍କି ଦେଇ ଯେନ ଯାଉଛୁ ବହୁ

ଆଉ କହିବୁ ଅବା କେତେ ହେ । ୧୨ ।

ଡୋଳେ ଦେଖି ଶ୍ରବଣେ ଶୁଣିବା ଯେତ୍ନ ସୁଖ

କାଳେ ହୁଅଇ ଦୁଃଖକର

ଡାକ ବନ୍ଧୁକୁ ତୁମ୍ଭ- ଦର୍ଶନ ବଂଶୀ ଧ୍ୱନି

ଯେଉଁ ଅମ୍ଭର ଏବେ ଦୂର ହେ

ଘନଶ୍ୟାମ !

ଡକାଇତର ତୁମ୍ଭେ ଗୁରୁ
ଡକା କରୁଛ କଂସ ଦୂରୁ
ଡକାଇତରେ ପଡ଼ି ଗଲେ ଡକା କି ନୋହେ
ଡକାଇତରେ ଆଡ଼ କରୁ ହେ । ୧୩ ।

ଢାଳେ ତୁମ୍ଭ ମୂରତି ମଧୁର ବଂଶୀଗୀତି
ଦେଖି ଯା ଶ୍ରବଣେ ଶୁଣିଲୁ
ଢମ ନୋହେ ଧରଣୀ- ପ୍ରାୟେ ଗୋପ-ତରୁଣୀ
ମଦନ-ଢୋପରେ ପଡ଼ିଲୁ ହେ
ଘନଶ୍ୟାମ !

ଢଳ ନ ଯାଇ ଥିଲା ଜୀବ
ଢାଳେ ସେ କଥା ଯେବେ ହେବ
ଢଳଲଣି କମଳ ଦଳଗତ କମଳ
ପଶ୍ୱେ ଏବେ ତୁମ୍ଭ ଭାବ ହେ । ୧୪ ।

ଅହେ ଶ୍ୟାମ ସୁନ୍ଦର ବୃନ୍ଦାବନର ଚନ୍ଦ୍ର
ଅଗତ ଜନ ପରିତ୍ରାଣ
ଅନାଥ ଗୋପୀ ନାଥ କର ତୁମ୍ଭଙ୍କୁ ପାଇ
ଯେବେ ହୋଇଛି ଅକାରଣ ହେ
ଘନଶ୍ୟାମ !

ଆଉ କି କହିବି ବତୁର
ଯେମନ୍ତ ଅଭାଗ୍ୟ ଆମ୍ଭର

ଅଙ୍ଗ ବସନ ଆଣୀ— ବିଷ ହୋଇଲା ଯେବେ
ତାହାଙ୍କ ମନ୍ତ୍ର ଉପଶ୍ଚର ହେ । ୧୫ ।

ତୁମ୍ଭ ପ୍ରଭୁପଣକୁ ତୁମ୍ଭେହେଁ ପଠାନ୍ତର
ତୁମ୍ଭର ଅବା କଉଁ ଦୋଷ
ତଥାପିହେଁ ପଳାଉ କର୍ପୂର ଲେମ୍ବୁ ଯୋଗୁ
ପ୍ରତ୍ୟକ୍ଷେ ହୋଇଅଛୁ ବିଷ ହେ
ଘନଶ୍ୟାମ !
ତୁମ୍ଭେ ତ ଜାଣ ସବୁଖ୍ୟାତ
ତାହାଙ୍କ ଆମ୍ଭର ଯୁଗତ
ତୁମ୍ଭ ଆମ୍ଭ ପୀରତି— କ୍ଷୀରନୀରକୁ ପ୍ରତି
ଅନ୍ତର ଦୃଶ ହଂସ ମୂର୍ତ୍ତି ହେ । ୧୬ ।

ସ୍ଥାପନ କର ବିଷ— ବୃକ୍ଷ ନ କର ନାଶ
ଯେମନ୍ତ ବୋଲନ୍ତି ସଂସାରେ
ଥୋଇଛ ଯେତେ ରୂପେ ଯଥା ତୁମ୍ଭେ ସ୍ନେ ଗୋପେ
ଚନ୍ଦ୍ରମା ଯେମନ୍ତେ ନିଶାରେ ହେ
ଘନଶ୍ୟାମ !
ଥିଲେ କି ହେବ ପ୍ରଭୁପଣ
ଥାଇ ଯେବେ ସମସ୍ତ ଗୁଣ
ସ୍ଥିର ବିବେକ କ୍ଷମା ଦୟା ଧର୍ମ ଗାରିମା
ଦାନ ଏ ଉତ୍ତମ ଲକ୍ଷଣ ହେ । ୧୭ ।

୧୭-୯—ବୈଷ୍ଣବଙ୍କ ଉତ୍ତମ ଲକ୍ଷଣ (ଗ)

ଦେଖ ଯଉଁ ସଭାରେ ଘଲକ୍ଷେକ ବେଭାରେ
ନାମ ଅଙ୍କୁର ଖଳବୃଦ୍ଧି
ଦୁଃଖଦେଲେ କେବଳ ନାମ ହେବ ମଙ୍ଗଳ
ଘନ ନାମ ଚ ପରସିଦ୍ଧି ହେ
ଘନଶ୍ୟାମ !
ଦୁଷ୍ଟଙ୍କୁ ଢପାଁ ଏଥି ବାଛ
ଦୃଢ଼ ସେ ନାମରୁ ପ୍ରତ୍ୟକ୍ଷ
ଦେଖିବାକୁ ସ୍ଥିର ସେ ଚନ୍ଦ୍ର ସୂର୍ଯ୍ୟ ପର୍ଯ୍ୟନ୍ତେ
ଗତାଗତରେ ତାଙ୍କୁ ଲକ୍ଷ୍ୟ ହେ । ୧୮ ।

ଧର ତୁମ୍ଭ ଚରଣ କହୁଛୁ ଅହେ ପ୍ରାଣ—
ବନ୍ଧୁ ଆମ୍ଭ ବଚନ ଶୁଣ
ଧନୁ ଯାତ୍ରା କପଟେ ଧଇଲ ନେଉଅଛୁ
ଧ୍ରୁବ କର ସ୍ନେହ କଥା ଜାଣ ହେ
ଘନଶ୍ୟାମ !
ଧାତା ସହିତେ ସମର୍ପଣ
ଧାର୍ମିକ ବିବେକ ଲକ୍ଷଣ
ଧର୍ମହିଁ କର୍ମ ଅନ୍ତ— ରୂପେ ହୋଇଥିବ ପ୍ରସନ୍ନ
ଧଇର୍ଯ୍ୟନାଥ ତୁମ୍ଭେ ଜାଣ ହେ । ୧୯ ।

ନଷ୍ଟେ ଦନୁଜ ପତି— କୂଳ ହୋଇଲେ ମତି
ଅଜାତି ହୁଅଇ ପ୍ରମାଣ

୧୮-୮—ଦୁଇଙ୍କ ସ୍ନେହ ଧ୍ୟେଯ (ଖ)

ନନ୍ଦଯଶୋଦା ଲେଶେ ନ ଛଡ଼ନ୍ତି ଏବେ ସେ
ହୃଦକ୍ତି କଲେ ତ ପାଷାଣ ହେ
ଘନଶ୍ୟାମ !
ନୟନରେ ଘୃତ ଦେଲା ପ୍ରାୟେ
ନୟନରେ ଜଳୁଛି କାୟେ
ନଷ୍ଟପ୍ରାୟେ ଇଚ୍ଛା-ପ୍ରାଣ ହୋଇଥିଲେ ପ୍ରମାଣ
ନ ଥାନ୍ତା ଏତେବେଳ ଯାଏ ହେ । ୨୦ ।
ପୂତନା ଅଘା ବକା କେଶୀ ଆଦ ଧେନୁକା
ଷଣ୍ଢ ଶକଟା ତୃଣାସୁର
ପ୍ରାଣେ ଏହାଙ୍କୁ ମାରି ପ୍ରାଣକୁ ରକ୍ଷା କରି
ଆମ୍ଭଙ୍କୁ କଲ ପ୍ରତୀକାର ହେ
ଘନଶ୍ୟାମ !
ପ୍ରବଳ ଦାବାନଳ-ପୋଡ଼ି
ପ୍ରତାପୀ ପୁରନ୍ଦର ଧାଡ଼ି
ପ୍ରତେ ହୋଉଛି ଏବେ ସମସ୍ତେ ଏକ ହୋଇ
ବାହୁଡ଼ି ଅସୁଛନ୍ତି ମାଡ଼ି ହେ । ୨୧ ।
ଫୁଲ୍ଲାରବିନ୍ଦ ମୁଖ ଦେଖୁଥିବାର ସୁଖ
ଦୁଃଖ କେ କରିବାକୁ ନାହିଁ
ଫୁଲଧନୁରେ ଫୁଲ— ଶର ବସାଇ ଫୁଲ—
ଧନୁ କି ଅଛି ବାଟ ଚାହିଁ ହେ
ଘନଶ୍ୟାମ !
ଫୁଟି ହେଉଛି ମନେ ଯାହା
ଫେଡ଼ି କହିବୁ କେତେ ତାହା

ଫାଇ କାଳେ ତୁମ୍ଭଙ୍କୁ   ଅଣ୍ଡେ କରିବୁ ବୋଲି
ଦେଉଥିଲୁଁ ଅତି ଉଚ୍ଛାହା ହେ । ୨୨ ।

ବୃନ୍ଦାବନରେ ଥିଲେ   ବିକଳ ହୋଉଥାଉଁ
ଯୁଗ ସମାନ ମଣୁ ଦିନ
ବିଧାତା ବିଗ୍ରହରହିଁ   କି ଭୁଲିଅଛୁ ତାହା
କହିବାକୁ ବସିଛୁ ଭଲ ହେ
ଘନଶ୍ୟାମ !
ବାହ୍ୟିକ ବୋଲିବା ବିଅର୍ଥ
ବିଶ୍ବରେ ତୁମ୍ଭେ ସବୁ ଅର୍ଥ
ବତ୍ସ ବାଳକ ହରି—   ନେବା କାଳରେ ତାହା
ସଙ୍ଗେ କି ନ କଲି ଅନର୍ଥ ହେ । ୨୩

ଭ୍ରମର ଫୁଲେ ବସି   ବିହରୁଥିଲେ ହସି
କରୁ ଯେ ଥାଉଁ ଉପହାସ
ଭିନ୍ନ ଭିନ୍ନ ପୀରତି   ଦଣ୍ଡକେ ଆନ ଖୋଜି
ଭିନ୍ନ ଅମ୍ଭର ପୀତବାସ ହେ
ଘନଶ୍ୟାମ !
ଭଗିଲା ସେ ଗରବ ଏବେ
ଭଗାଣୀ ପ୍ରାପ୍ତେ ସେ ହସିବେ
ଭବଗ୍ରାହୀ ହୋଇ ଯେ   ଅଭାବେ ବଢ଼ିଅଛ
ଜଗତେ କି ବୋଲି ବୋଲିବେ ହେ । ୨୪ ।

ମନ୍ଦା ଅନ୍ଧାର ଲୋକରେ   ମଦନ୍ଧ ହସ୍ତୀମାନେ
ମହନ୍ଧ ଝୋପରେ ପଡ଼ନ୍ତି

ମହାତୃଷା ଆଚରେ ମୃଗମାନେହେଁ ମୃଗ—
ତୃଷ୍ଣାରେ ଜୀବନ ଛାଡ଼ନ୍ତି ହେ
ଘନଶ୍ୟାମ !
ମହାପଣ୍ଡିତ ଗୁଣ ଥିଲେ
ମାୟାରେ ଭ୍ରମହୋଇ ଭଲେ
ମହା ଆଶାରେ ମହା— ଦୁଃଖ ଭୋଗ କରନ୍ତି
ମହା ମୂର୍ଖ କୃପଣ ବୋଲେ ହେ । ୧୫ ।

ଜନ୍ମ କାଳରୁ ଯେତେ ଯେତେ ଦୁଷ୍ଟ ଗୁପତେ
ଅଇଲେ ତାହାଙ୍କୁ ମାଇଲ
ଜଗତ-ଯନ୍ତ୍ରକାର ହୋଇ ଏବେ ଅକ୍ରୂର
କର-ଯନ୍ତ୍ରପ୍ରତିମା ହେଲ ହେ
ଘନଶ୍ୟାମ !
ଯେମନ୍ତ ସୂତ୍ରଧାର ବୋଲେ
ଯବନିକା ଅନ୍ତରେ ଥିଲେ
ଯବନୀରୁ ବାହାର ହୁଅଇ ନଟବର
ସେ ରୂପେ ତୁମ୍ଭଙ୍କୁ ସ୍ନେହ କଲେ ହେ । ୧୬ ।

ରାଜାମାନେ ହାସରେ ମାତଙ୍ଗ ପରଶରେ
ସର୍ପ ଆଘ୍ରାଣରେ ନାଶନ୍ତି
ରବି ଅଗ୍ନି ବିଷରୁ ଦୂଷାରେ ମହାପୁରୁ (୧)
ମୁଖେ ଯା ସ୍ତୁତିରେ ଭାଷନ୍ତି ହେ
ଘନଶ୍ୟାମ !

୧୫-୧—ମହାନ୍ତ ପଣ ଦୋଷ (ଶ)

ରଙ୍ଗ ସଭାକୁ ଯାହା ରୁଚି
ରଥରେ ଯାଉଅଛ ବସି
ରଙ୍ଗ-ରାଜୀବ କରେ            ଧେନ ଅଧିପତରେ
ଆମ୍ଭର ଗଲେ ଦଧି   ଘଷି ଦେ । ୨୭ ।

ଲାବଣ୍ୟ ନିଧି ହସି            ରଥୁଁ ଓହ୍ଲାଇ ଆସି
ବୋଲନ୍ତି ଅଗୋ ଗୋପୀମାନେ !
ଲକ୍ଷ୍ୟ ନାହିଁ ତୁମ୍ଭଙ୍କୁ            ଯେତେରୂପେ ଆମ୍ଭଙ୍କୁ
ଭଜିଲ ଅତହିଁ ଯତନେ ଗୋ
ଗୋପୀମାନେ !
ଲୀଳାରେ ଯେ ଯାହାକୁ ଭଣେ
ଲୋଭ ତା ଠାରେ ଅନୁକ୍ଷଣେ
ଲକ୍ଷେ କୋଶରେ ଥିଲେ            ସେହି ତାହାର ଭଲେ
କେବଳ ରାଜା ଆଜ୍ଞା ଏଣେ ଗୋ । ୨୮ ।

ବେଭାରେ ତ ତୁମ୍ଭର            ଗୁଣେ ମନ ଆମ୍ଭର
ଭାବରେ ବନ୍ଧନ ହୋଇଛି
ବଢ଼ କରଣ ଯେତେ            ମନରେ ଦେନଥିବ
ତେତେଠେଁ ତୁମ୍ଭ ପାଶେ ଅଛୁ ଗୋ
ଗୋପୀମାନେ !
ବକ୍ତ୍ରର କର ଏହା ମନେ
ବଦେଶ କରିଥିଲେ ଜନେ
ବଡାଇ ଯେ ଯାହାର            କାର୍ଯ୍ୟ ପୁଣି ଦୋସର
ପ୍ରବେଶ ହୋଅନ୍ତେ ସଦନେ ଗୋ । ୨୯ ।

ସଂସାରେ ଏହି ମତ ଦୁଃଖ ସୁଖ ସଂପତ୍ତି
ଚିର ହୋଇ ନ ରହେ କେହି
ଶୁଭ ଅଶୁଭ ଯୋଗ ଲାଭ ହାନି ଅଯୋଗ
ଶରୀର ହେଲେ ସବୁ ବହି ଗୋ
ଗୋପୀମାନେ !
ସମସ୍ତ ହୋଇ ଜୀବ ଥିଲେ
ସବୁ ସରଇ ଜୀବ ଗଲେ
ସଂଶୟମନା ନୋହି ଆନନ୍ଦେ ଥିବ ଚାହିଁ
ଅଧିକ କି ହେବ କହିଲେ ଗୋ । ୩୦ ।

ଶୁଣିଥିବ ସମସ୍ତେ ଯେତେବେଳେ ଶ୍ରୀହସ୍ତେ
ଲେଖିଅଛନ୍ତି ଭୋଜପତ୍ର
ସହଜେ ରାଜା ଆଜ୍ଞା କର ନୋହେ ଅବଜ୍ଞା
କଲେ ରହି ନ ପାରୁଁ ଛିତ ଗୋ
ଗୋପୀମାନେ !
ସେ ଯେଉଁ ଶ୍ରୀକର ସନ୍ତକ
ସାକ୍ଷାତ ହୁଅଇ ଅନ୍ତକ
ସମ୍ଭାବନା କଲେ ସେ ସକଳ ଦୁଃଖ ନାଶେ
ସୁଖହିଁ ଦିଅଇ ଅନେକ ଗୋ । ୩୧ ।

ସନ୍ତୋଷ ହୋଇ ଏବେ ବୋଲିବ ଯେବେ ତେବେ
ରାଜାଙ୍କୁ ଦର୍ଶନ କରିବୁ
ଶୁଭେ ଧନୁ ଉତ୍ସବ– ଯାହା ବଢ଼ାଇ କର
ସବୁର ସନ୍ତାପ ହରିବୁ ଗୋ

ଗୋପୀମାନେ !
ସ୍ନେହ ଆମ୍ଭଙ୍କୁ କରିଥିବ
ଛିନ୍ନିବ ପରାୟେ ନୋହିବ
ସେ ଯେମନ୍ତ ପାଖରେ ଥିଲେ ସ୍ୱଇଚ୍ଛ ଯରେ
ଅନ୍ତର ହେଲେ ଆନ ଭାବ ଗୋ । ୩୨ ।

ହରଷ ଶୋକ ଭରେ ଏକ ଗୋପୀଟିଏ ଧୀରେ
ବୋଇଲା ଅହେ ବ୍ରଜରାୟେ
ହୃଦ ଭିତରେ ଅମ୍ଭେ ତୁମ୍ଭଙ୍କୁ ଦେଖୁଅଛୁଁ
ଜଳରେ କମଳ ପରାୟେ ହେ
ଘନଶ୍ୟାମ !
ହରଷରେ ବଚନ କହ
ହୃଦୟରେ କପଟ ବହ
ହରିଲ ଆମ୍ଭ ଚିତ୍ତ ଧନ୍ୟ ଲୋକେ ମୋହିତ
ତୁମ୍ଭର ଚରିତ୍ରେ ସବୁ ଏହି ହେ । ୩୩ ।

କ୍ଷମା ସାଗର କ୍ଷୋଭ ଛଡ଼ାଇ ଅଶା ଲୋଭ
ଦେଖାଇ ଗୋପୀଙ୍କି ମୋହିଲେ
କ୍ଷଣକେ ରଥେ ବସି ଅକ୍ରୂର ମନ ତୋଷି
ମଥୁରାକୁ ବିଜୟ କଲେ ସେ
ଘନଶ୍ୟାମ !
କ୍ଷପାକର ବଦନ ଦେଖି
କ୍ଷଣକେ ହେଲେ ଜନେ ସୁଖୀ
ଛଳନେ ଯାନକୃଷ୍ଣ ବୋଲେ ତାଙ୍କ ନନ୍ଦନ
ନନ୍ଦନ କର ସିନା ଲେଖି ହେ । ୩୪ ।

—o—

# ଗୁଣ୍ଡିଚା ଭାବନା ଚଉତିଶା

ବୋଧହୁଏ ପୂର୍ବରୁ ରଜାଙ୍କରେ ନିବେଦିତ ହୋଇଥିବା ସମ୍ବନ୍ଧରେ ଥିବ ଜନରବ ଓ ଶ୍ରୀଗୁଣ୍ଡିଚା ଦର୍ଶନ ଅବସରେ ଅପୂର୍ବ ଦେବ ଶ୍ରୀ ଜଗନ୍ନାଥଙ୍କ ଚରଣରେ ପାତ ହୋଇ ଗୋବିନ୍ଦ ଥିବ ସ୍ମରଣ ଚଉତିଶା ଓ ଗୁଣ୍ଡିଚା ଭାବନା ଚଉତିଶା ଲେଖିଥିଲେ । ଏ ସୁଲଳିତ-ଯାଇ ଚଉତିଶାକୁ ଏକ ସଙ୍ଗରେ ପଢ଼ିଲେ ଭକ୍ତର ଭଜନାପୂର୍ଣ୍ଣ ଅନ୍ତରରେ ଯେଉଁ ବେଦନା—ଭଗ୍ନ ହୃଦୟ-ଅବଲୋକନ ତାହାର ମନୋଜ୍ଞ ଧାରଣା କରିହୁଏ । ଏ ଚଉତିଶା ଦାସଙ୍କ ଭକ୍ତିର ଏପରି ରୋମାଞ୍ଚ ଓ ଜଗନ୍ନାଥ ପ୍ରୀତିରତା ଅଛି ଯାହାକୁ ଦେଖିଲେ ଦାସଙ୍କର ଭାଷାରେ "ଘୋର ବରଷା ବଢ଼ି ନଦୀ ସମୁଦ୍ର ମିଳିଲା"—ଭାବର ଜଳ-ବେଗ ମନେ ପଡ଼ିଯାଏ ।

ଦେଶ—ସିନ୍ଦୂରା

କହ କହ ଅହେ ସଙ୍ଗାତ ସତେକି ଜୀବନରେ ଅମ୍ଭେ ଥିବା
କୋଟି ବ୍ରହ୍ମାଣ୍ଡନାଥର ଶ୍ରୀଗୁଣ୍ଡିଚା ଯାତ୍ରା ଉତ୍ସବ ଦେଖିବା ଯେ
କୃପା କରିବେ ସତେ
କାମପାଳ ସୁଭଦ୍ରା ସହିତେ ସେ । କରିଥିଲି ଭାଗ୍ୟ ଅମ୍ଭେ ଏତେ ସେ
କହ ହୋଇଛି କି ମନେ ପ୍ରତେ ସେ । ୧ ।

ଖେଳନ୍ତି କେଶବ ପ୍ରାୟେ ନୀଳଗିରି—ଶିଖୁଁ ପଡ଼ିଥିବେ ଖସି
ଖଟୁଲି-ଧରି କରିବେ ସେହି କାଳେ ଦେଖିବା ସେ ସୁଖରାଶି ସେ
ଖଣ ଖଣକ ଲୀଳା
ଖେଦ ସାଗର ତରିବା ବେଳା ସେ । ଖର ପାତକ ତମିର ଭୁଲା ସେ
ଖଣ୍ଡେ ଅଶେଷ ସନ୍ତାପ ଜାଳା ସେ । ୨ ।

ଗଙ୍ଗା ଯମୁନା ସରସ୍ୱତୀ ପରାୟେ ଉଜଗତ ଯେବା ଲାଗେ
ଗଜପତି ପହଣ୍ଡି କରୁଥିବେ ଭଗୀରଥ ପ୍ରାୟେ ଆଗେ ସେ
ଗଦ ଗଦ ଗହଳ
ଗୀତ ବାଦ୍ୟ ନାଦଙ୍କ ପ୍ରବଳ ସେ । ଗର୍ଜୁଥିବ ସମୁଦ୍ର ଚହଲ ସେ
ଗଲେ ଦିନା ଦେଖିବା ସେ କାଳ ସେ । ୩ ।

ଘୋର ବରଷା ବଢ଼ି ନଦୀ ସମୁଦ୍ର ମିଶିଲା ପରାଏ ହୋଇ
ଘନ ଘନ ହରି ଧ୍ୱନି କି ବିସ୍ତାର ପଶୁଥିବେ ଲୋକେ ଯାଇଁ ସେ
ଘନଶ୍ୟାମସୁନ୍ଦର
ଯେଣି ଚତୁର୍ବର୍ଗ ସଙ୍ଗାଧର ସେ । ଘନଘନ କରାଇବା ଜୁର ଯେ ।
ଯେନ ଘୋଟିଥିବେ ସୁଜନର ସେ । ୪ ।

ନୀଚ ଉଚ୍ଚ ନାନା ସ୍ଥାନରେ ଯେମନ୍ତ ଚନ୍ଦ୍ର କିରଣ ସମାନ
ନୀଳାଦ୍ରି ଚନ୍ଦ୍ରମା ଦାନ ସେହିମତ ସେହିରୂପେ ଅବଧାନ ସେ
ନୋହିଲେ କି ଈଶ୍ୱର
ନବପଞ୍ଚଲୋକେ ଅଲଙ୍କାର ସେ । ନାନା ଜୀବ ଯହିଁ ଏକାକାର ସେ
ନାହିଁ ନାହିଁ ଯେ ଆଉ ଦୋସର ସେ । ୫ ।

ଚତୁର୍ଦ୍ଦଶଲୋକ ନୟନ ସମ୍ପତ୍ତି ଏହା ସମ୍ପାରେ ବିଜୟେ
ମୁହୁଁ ମୁହୁଁ ପ୍ରଭୁ ଅଙ୍ଗକୁ କରଇ କଦମ୍ବ କୁସୁମ ପ୍ରାୟେ ସେ
ଚିତ୍ତ—ଚକୋର ଚନ୍ଦ୍ର
ଚନ୍ଦ୍ରାପଦ୍ମବନ ଗଜଇନ୍ଦ୍ର ସେ । ଚରାଚର ପାଳିବାରେ ଇନ୍ଦ୍ର ସେ
ଚିନ୍ତାମଣି-ପର୍ବତ-ଯାଗେନ୍ଦ୍ର ସେ । ୬ ।

ଛୀର ସମୁଦ୍ର ଉଛୁଳିଲା ପ୍ରାୟେ ସେ ଛତ୍ର ଚାମର ଦଶିବା
ଲୁଣି ଖଣ୍ଡାଧର ଖଟଣୀଯାମନ୍ତେ ଅଭୟେ ପାଶେ ମିଶିବା ସେ
ଛନ୍ଦବର ଗନ୍ଧର୍ବ
ଛୁଞ୍ଚ ଦେବୀ ଶିର ଆଭରଣ ସେ । ଖେଳ ଜଳନିଧି ଉଦ୍ଧାରଣ ସେ
ଛଡ଼େ ଭାବିଲେ ଭବ କଷଣ ସେ । ୭ ।

ଯମୁନାକୂଳେ ଫୁଟିଲା ପଦ୍ମଫୁଲ ପ୍ରାୟେ ସେ ବିସ୍ତାର ଆଖି
ଯେମନ୍ତ ସୁନ୍ଦର କଳା ଶ୍ରୀମୁଖକୁ ନେଇହିଁ ତାହାଙ୍କ ସାକ୍ଷୀ ସେ
ଯଉଁ ଭାବେ ଢଳିବା

ଯଉଁ ରୂପେ ଦୁଃଖକୁ ଦଳିବା ସେ । ଯେଉଁ ପ୍ରକାରେ ସୁଖ ପାଳିବା ସେ
ଜାଣି ନୋହଇ ତାହା କଳିବା ସେ । ୮ ।

ଝଟକ ବିଜୁଳି ପ୍ରାୟେ ଅଙ୍ଗ ତାଳ ବାରସୁନ୍ଦରୀଙ୍କ ନାଟ
ଝଲ ଝଲ ଧୂଳି ବୃଷ୍ଟି ନିରନ୍ତରେ ଅଗର ଧୂପ ଚହଟ ସେ
ଝଲ୍ଲ କଂସାଳ ତାଳ
ଝମ ଝମ ଝଞ୍ଜାଳ ମର୍ଦ୍ଦଳ ସେ । ଝଳ ବାଜିବା ନାଦ ପ୍ରବଳ ସେ
ଝାଙ୍କେଥିବ ଗଗନ ମଣ୍ଡଳ ସେ । ୯ ।

ଞବଡ଼ ଅନ୍ଧାରେ ପଡ଼ିଲେ ଯେସନ୍ତ ଅନ୍ଧାରୁ ଆନ ନ ଦିଶେ
ନବଘନଶ୍ୟାମ ସୁନ୍ଦର ଶ୍ରୀମୁଖ ଦର୍ଶନହିଁ ସେହି ଅଶେ ସେ
ନାନା ଦେଶ ନୃପତି
ଞାନା ସଜହିଁ ଯୁବାଯୁବତୀ ସେ । ନିରନ୍ତରେ ପୂରୁଥିବେ ଛତ୍ରସେ
ନେତ୍ର ଦେଖଇ ସେହି ମୃଗଢସେ । ୧୦ ।

ଟଳିବ ସତେବେଁ ଦୁର୍ଦ୍ଦଶା ଆମ୍ଭର ଦେଖିବା ଯାଇ ସେ ସଜ
ଟେକ ଖୋସିଥିବେ ଦୂର୍ବାବଳ ଶିରେ ଦେବାଧିଙ୍କ ଦେବରାଜ ସେ
ଟେକ ନେତ୍ର ଗୃହାଣୀ
ଟେକ ଶ୍ରୀକର ବଇଠି ଠାଣି ସେ । ଟକାଟକ୍କ ଓଲ୍ଟଣି ଉଠାଣି ସେ
ଟାଙ୍କ ଦେଖନ୍ତି ସୁକୃତି ପ୍ରାଣୀ ସେ । ୧୧ ।

ଠାକୁର ପଣ ମହିମା କି କହିବ ଚନ୍ଦନଂ ଶୀତଳ ହୁଅ
ଠାଠିକ କର ସବୁରି ମନ ଜାଣେ କେତେହେଁ କରନ୍ତି ଦୟା ସେ
ଠେଲ୍ଲ ଠେଲରେ ପଶି
ଠାବେ ଠାବେ ପାରୁଶରେ ମିଶିସେ । ଠିକେ ଜଣାଇ ଯେତେ ଉରସି ସେ
ଠିକେ ଶୁଣନ୍ତି କର୍ଣ୍ଣ ନବେଶି ସେ । ୧୨ ।

ଡରନ୍ତି ଯାତ୍ରାର ସମ୍ମୁ ଜଣାଣକୁ ବ୍ରହ୍ମାଦି ଦେବ ଶଙ୍କରେ
ଡାକନ୍ତି ତାହାଙ୍କୁ ଏକମୁଖ ହୋଇ ଦୀନ ପାପୀ ଜଣଙ୍କରେ ସେ
ଡାକ ଶୁଣନ୍ତି ରହି
ଡାକିବାକୁ ଭୟେ ତହିଁ ନାହିଁ ସେ । ଡୋଳେ ଦେଖିଲାତ ଅଛି ତାହିଁ ସେ
ଡାକିଲେହେ ରଥେ ଥାନ୍ତି ବାହି ସେ । ୧୩ ।

ଢଳ ଢଳ ଚନ୍ଦ୍ରମଣ୍ଡଳ ଧବଳ ମେଘ ପ୍ରକାଶିଲା ପ୍ରାୟେ
ଢଳ ତୋରଣାଦ୍ୱାରେ ହଳୀ ଦଣ୍ଡନ୍ତି ଦଣ୍ଡେ ସବୁ ଝଳମଧ୍ୟେ ସେ
ଢଳ ବଜେ କରିବା
ଢାଳେ ସନ୍ତେହେଁ ଦେଖିପାରିବା ସେ । ତମେ ଅମୃତ ପାନ କରିବା ସେ
ଢଗପସର୍ ପଇଡ଼ହରିବା ସେ । ୧୪ ।

ଉତ୍ତମ ରଥ ଗଜ ଅଶ୍ୱ ଉତ୍ତମ ସ୍ତ୍ରିରୀ ଚନ୍ଦ୍ର ଲକ୍ଷ୍ମୀ ପ୍ରଭା
ଆଦି ସେ କ୍ଷୀର ସମୁଦ୍ରରୁ ଜନ୍ମିଲା ପ୍ରାୟେ ପାଉଥିବେ ଶୋଭା ସେ
ଇନ୍ଦ୍ର ଆଦି ଅମରେ
ଆସି ରହି ଅଛ ଆକାଶରେ ସେ । ଅଶ୍ରୁ ପୂରିତ ଆନନ୍ଦ ଭରେ ସେ
ଅନାଇ ସେ ଥିବେ ଅଛି ଧୀରେ ସେ । ୧୫ ।

ତ୍ରିପୁରାସୁର ମାରଣେ ମହାଦେବ ରଥେ ବଜେ କଲା ପ୍ରାୟେ
ତାଳଧ୍ୱଜରଥ ମଣ୍ଡିବେ ସେ ତାଳଧ୍ୱଜ ବଳଦେବ ମଧ୍ୟେ ସେ
ତେଜ ପୁଞ୍ଜ ମୂରତି
ତିନଲୋକର ସୁଖ ସମ୍ପତ୍ତି ସେ । ତାଙ୍କ ବିନୁ ନାହିଁ ଆନ ଗତି ସେ
ତାଙ୍କୁ ଦେଖିଲେ ଲଭେ ମୁକତି ସେ । ୧୬ ।

ଥକିତ ବିଜୁଳୀ ସୂର୍ଯ୍ୟସଙ୍ଗେ ମିଳି ଉଦେ ହେଲା ପ୍ରାୟେ ହୋଇ
ଥିରେ ସୁଭଦ୍ରା ସୁଦର୍ଶନ ମଣ୍ଡିବ ପଦ୍ମଧ୍ୱଜ ରଥେ ଯାଇଁ ସେ
ଥିରେ ରଥରେ ବସି

ଥୀବ୍ରମନ୍ତ୍ରୀ ମଧୁରଭାଷୀ ଯେ । ଥିବେ ସେବକ ପାଶରେ ନିତି ଯେ
ଥିବା ଅମ୍ଭେମାନେ ସୁଖ ଭଷି ଯେ । ୧୭ ।

ଦୁର୍ଲଭ ଦର୍ଶନ ସୁଲଭ କର ସେ ପ୍ରଭୁ ପରମ ଈଶ୍ୱର
ଦେଖି ଦେଖି ସିନ୍ଧୁ ପର୍ଯ୍ୟନ୍ତ ସତ୍ବରେ ପାଇଯିବେ ସିନ୍ଧୁଦ୍ୱାର ଯେ

ଦିବ୍ୟପଦ୍ମଚରଣ

ଦେବୀ ପଦ୍ମଅସନୀ ଶରଣ ଯେ । ଦାସ ଜନଙ୍କ ଦୁଃଖ ହରଣୀ ।
ଦେଖି ପୃଥ୍ୱୀ କରେ ଅବରଣ ଯେ । ୧୮ ।

ଧନ୍ୟ ଧରଣୀ ଫଣୀ ମଣି ବାସୁକୀ କମଠ ମଣ୍ଡକଭାବ
ଧନ୍ୱନ୍ତରୀ ହୋଇ ବୈଷ୍ଣବବେଶରେ ଧରନ୍ତି ଦେବଙ୍କ ଦେବ ଯେ

ଧନ୍ୟ ଧନ୍ୟ ସେ ଧୂଳି

ଧୀରେ ତାଙ୍କ ଭାଗ୍ୟ ନୋହେ କଳ ଯେ । ଧର ପ୍ରଭୁଙ୍କ ବିଜୟେ ଭୂଲ ଯେ
ଧାଇଁ ଥାନ୍ତି ଧ୍ରୁବ ଲୋକ ବଳ ଯେ । ୧୯ ।

ନଷ୍ଟେ ପରଶମଣି ସୁଣ୍ଣ ପ୍ରମାଣ ଲୁହାରୁ କରଇ ସୁନା
ନୀଳାଦ୍ରି ମଣ୍ଡନ ଦର୍ଶନ ପରଶ ତାହାଙ୍କ ଅଧିକ ସିନା ଯେ

ନାନା ଜୀବଙ୍କ ହିତେ

ନବ୍ୟକାର ସାକାରର ମତେ ଯେ । ନଟେ୍ୟବଦବେ ନୀଳ ଦଙ୍କତେ ଯେ
ନାନା ଯାତ୍ରାହିଁ ସେହି ନାମନ୍ତେ ଯେ । ୨୦ ।

ପୃଥିବୀରେ ପୂର୍ଣ୍ଣଚନ୍ଦ୍ରମା ଖେଳବା ପ୍ରାୟେ ବଚନ୍ଦ୍ର ଦଶିବା
ପଦ୍ମ ପାରିବାର ପର୍ଯ୍ୟନ୍ତେ ସମସ୍ତେ ପୁଣି ପୁଣି ପୂର୍ଣ୍ଣ କବା ଯେ

ପାରିଜାତକ ବୃକ୍ଷ

ପ୍ରାପ୍ତେ ହୋଇ ଯେ ଥିବେ ପ୍ରତ୍ୟକ୍ଷ ଯେ । ପୂର୍ଣ୍ଣ କର ବାଞ୍ଛା ଲକ୍ଷ ଲକ୍ଷ ଯେ
ପାପ କଷ୍ଟରୁ କରିବେ ମୋକ୍ଷ ଯେ । ୨୧ ।

ଫଗୁଣ ମାସେ ଫଗୁଖେଳ ଉଛବେ କାମଦେବ ବଜେ ପ୍ରାୟେ
ଫୁଲ୍ଲାରବିନ୍ଦ ନେତ୍ର ଫୁଲ ଗୁଳନ୍ତେ ଫଗୁଣାକୁ ନେବେ ହୋଏ ସେ
ଫୁଲ ଛଟି ଗୁମର
ଫୁଲ ଅଲଟ ପଖା ଅପାର ସେ । ଫଗୁଣାରେ ଧରିଥିବେ କର ସେ
ଫୁଲ ବନୋଦଅଙ୍କ ଝୁମୁର ସେ । ୧୨ ।

ବ୍ରହ୍ମାଦି ଶଙ୍କର ଦେବଙ୍କୁ ଦୁର୍ଲ୍ଲଭ ଯେଉଁ କରୁଣା କର୍ଣ୍ଣା କଟାକ୍ଷ
ବୃଷ୍ଟି କଲ୍ପପ୍ରାୟେ ବୃଷ୍ଟି ଯାକରେ ସେ ପଡ଼ୁଥିବ ଲକ୍ଷ ଲକ୍ଷ ସେ
ବେତ୍ର ହସ୍ତ ସେବକେ
ବେତ୍ରଧାରୀ ହୋଇ ଏକେ ଏକେ ସୋତେ ବେଢ଼ିଥିବେ ଚାରିପାଶ ଯାକେ ସେ
ବଜେ କରାଉଥିବେ ନଗକେ ସେ । ୧୩ ।

ଭକ୍ତ-ଜନ-ମନ-କୁମୁଦ-ଚନ୍ଦ୍ରମା ମଧୁର ହସେ ଗୁହିଁବା
ଭକ୍ତ-ଭର ଦେଇ ଭୃତ୍ୟଙ୍କ ଉପରେ ବଙ୍କିମା ହୋଇ ଚାହିବା ସେ
ଭଙ୍ଗୀ ଦେଖିବା ପାଇଁ
ଭଲେ ଜୀବନରେ ଜୀଇଥାଇଁ ସେ । ଭାଗ୍ୟ ସତେ ଏତେ କରିଛଇଁ ସେ
ଭବଭୟକୁ ଦେବା ପକାଇ ସେ । ୧୪ ।

ମେରୁ ପର୍ବତକୁ ସୂର୍ଯ୍ୟ ପରିକ୍ରମା କଲା ପ୍ରାୟେ ରଥ ବୁଲି
ମହିମା ସମୁଦ୍ର ଗୁରକୁ ଉଠବା ମତ୍ତ ଗଜ ପ୍ରାୟେ ଗେଲି ସେ
ମହା ସୁଖ ଦେଖିବା
ମନୁ ସବୁ ଦୁଃଖ ଉପେକ୍ଷିବା ସେ । ମଣ୍ଡି ମଣ୍ଡଳେ ଯଶ ରଖିବା ସେ
ମୃତ୍ୟୁ ଭୟ ଦୁଃଖ ନ ଲେଖିବା ସେ । ୧୫ ।

ମେତେବେଳେ ଠାକୁ ଅପସର ହୋଇ ଲୋକଙ୍କୁ ଦିଅନ୍ତି ଦୃଷ୍ଟି
ଜଗତ ଯାକରେ ଏକା ଲାଗକରେ ହୋଇ ଅମୃତ ବୃଷ୍ଟି ସେ
ଜଗମୋହନ ମୂର୍ତ୍ତି

ନାଚ କରାଇ ସ୍ୱର୍ଣ୍ଣ ସକ୍ଷତ୍ରି ସେ । ଜଗତକୁ ଦେଇ ଏକା ଗତସେ
କେଂୟାଛ ମଣ୍ଡଳରେ ବ ଦଶନ୍ତି ସେ ॥ ୨୭ ॥

ରାଜୀବନୟନ ଶ୍ରୀ ମୁଖ ସିଂହ୍ବାର ବଢାଇ ଅଛ ସଧୀରେ
ରଙ୍ଗ ଅଧରେ ମନ୍ଦରେ ହସି ଶଜଦ୍ୱେ କଚବା ସଜାଲ୍ଗିରେ ସେ
ରଚ ରୁଚର ବେଶ
ରଙ୍ଗେ ଦ୍ୱୋଇଥିବ ପୀତବାସ ସେ । ରହୁ ଅନାଇଥିବେ ହିଦଶ ସେ
ରସି ଥିବ ସବୁର ମାନସ ସେ । ୨୭ ।

ଲକ୍ଷ୍ୟବହିତ ବେଶକୁ ତ ସହଜେ ଲକ୍ଷ ଅଂଶେ ଲକ୍ଷ୍ୟ ନାହିଁ
ଲଲାଟ ପଟ ସ୍ୱର୍ଣ୍ଣ ଚିତା କର୍ପୂର ଭ୍ରୂଲତାକୁ ଲକ୍ଷ୍ୟ କାହିଁ ସେ
ଲକ୍ଷ୍ୟ ତାହାକୁ ସେହି
ଲୋକ କହିବାକୁ ଲୋକେ ନାହିଁ ସେ । ଲୋଚେ ଲୋଡ଼ିଲେ
ପାଇବା କାହିଁ ସେ
ଲୋଡ଼ି ଲୋଚନକୁ ଦେବା କହି ସେ । ୨୮ ।

ବୀର ବେଶରେ ବାଚଛତ୍ରୀ ଧରାଇ ବୀର ଆସନେ ବସିବା
ବକ୍ରମ କେଶବୀ ବକ୍ରମିଲ୍ଲା ପ୍ରାୟେ ବାହୁ ବସ୍ତ୍ରାଦ ଦଶିବା ସେ
ବୀରବରଙ୍କ ବର
ବୀର କେଦାରେ ମଣ୍ଡିତ ଶିର ସେ । ବୀରବାନା ବରାଜିତ କର ସେ
ବୀର ବାହୁରେ ମଣ୍ଡିତ ସୁର ସେ । ୨୯ ।

ସ୍ୱର୍ଗରୁ ଇନ୍ଦ୍ର ଅଇଲା ପ୍ରାୟେ ଅସି ନୃପଇନ୍ଦ୍ର ସେବା ସାଚ
ସାଢ଼ୀ ପାଇ ଶୁଦ୍ଧେ ବଳେ କରିଥିବେ ଗହଣକୁ ଅନୁସର ସେ
ସଙ୍ଗେ ଥିବେ ସମସ୍ତେ
ଷୋଳ ସାମନ୍ତ ନିଯୋଗ ଯେତେ ସେ । ସମତ୍ତ ଗଜ ଅଶ୍ୱ ସହିତେ ସେ
ସଂଖ୍ୟା କରିବା ପାଦାନ୍ତି କେତେ ସେ । ୩୦ ।

ସେ ତ ସୁନ୍ଦର ସକଳ ଘୋଡ଼ା ସାର ଉଚ୍ଚୈଶ୍ରବା ସହୋଦର
ଶୈବ୍ୟ ସୁଗ୍ରୀବ ମେଘପୁଷ୍ପ ବଳାହକ ନାମ ଯାହାଙ୍କର ସେ
ଚାରି ଅଶ୍ୱଙ୍କ ଯୋଡ଼
ସବ୍ୟ ଅପସବ୍ୟ ବାଗକୁ ଆଣି ସେ । ଶାଏ ପାଞ୍ଚଶ ଦଣ୍ଡକୁ ଯାଂଚ ସେ
ଶୀଘ୍ରେ ସାରଥି ରହିବା ଥାସ୍ଥ ସେ । ୩୧ ।

ଶ୍ରବଣ ମଙ୍ଗଳ ଜଗନ୍ନାଥ ହରି ବଳଦେବଙ୍କ ଅନାଇଁ
ଶୁଭେ ଆଗେ ବଳେ କଢ଼ ବୋଲିବାରୁ ବଳେ କରିବେ ଗୋହାଇଁ ସେ
ସଙ୍ଗେ ସୁଭଦ୍ରା ଯିବେ
ଶଙ୍ଖ ଘଣ୍ଟ ଘଣ୍ଟାଦି ବାଜିବେ ଯେ । ଶୀଘ୍ରେ ଲୋକ ପାଖେ ଅଇଲିବେ ସେ
ସେହି ସଙ୍ଗରେ ପ୍ରଭୁ ଯାଉବେ ସେ ॥ ୩୨ ।

ହାହାକାରି କର ଅଣଙ୍କ ଅବୋଧ ସେ ସାରଥି ଉଦ୍ଧେ ଛାଡ଼ିବା
ହସ୍ତକୁ ଚୂଲାଇ ବିକଶାଳ ହୋଇ ବଙ୍କ ଗୀତ ଉଲୁଟିବା ସେ
ହରି ଧ୍ୱଜା ଉଡ଼ିବା
ହାଥେ ହଥେ ଦଉଡ଼ି ଟାଣିବା ସେ । ହରଷରେ କେ କଉ ଯୋଡ଼ିବା ସେ
ହସ ଶ୍ରୀମୁଖେ ନେତ୍ର ପଡ଼ିବା ସେ ॥ ୩୩ ॥

କ୍ଷେତ୍ରପତି ଶିର ଲଗାଇ ପଛରେ ସଧୀର କରି ଠେଲିବା
କ୍ଷୀର ସମୁଦ୍ରରେ ସୁବର୍ଣ୍ଣ ବୋଇତ ପ୍ରାୟେ ରଥଙ୍କ ଚଳିବା ସେ
କ୍ଷମା ସାଗର ଲୀଳା
କ୍ଷୋଭସିନ୍ଧୁ ତରିବାକୁ ଭେଲା ସେ । କ୍ଷଣ୍ଟ କରେ ମହାପାପ କଳା ସେ
କ୍ଷଣେ ଧ୍ୟାନକୃଷ୍ଣିଆ ବାଉଳା ସେ । ୩୪ ।



## ସ୍ନାନ ସ୍ମରଣ ଚଉତିଶା

ବୃତ୍ତ—ବିଭୂତ୍ରା

କହେ ଦୀନକୃଷ୍ଣ ଶୁଣ ରେ ସଖୀ ଧିକ ହୋଉ ମୋ ଜୀବନ
କୋଟି-ବ୍ରହ୍ମାଣ୍ଡ-ନାଥ ସ୍ନାନ-ଉତ୍ସବ କଲିନାହିଁ ଦରଶନ ସେ
କର୍ମ ଅଭାଗ୍ୟ ମୋର
କଲା ସେ ସୁଖ ବାହ୍ୟ ଅନ୍ତର ସେ ।
କହିବାକୁ ତ ନୋହେ ଗୋଚର ସେ ।
କହ କହ ମତେ ସେ ଉତ୍ତର ସେ । ୧ ।

ଝଦ ଗ୍ରମର ଅଲଙ୍କ ପଙ୍କା ଯେଉଁ ଖଞ୍ଜଣୀ ସାମନ୍ତମାନେ
ଖଗପତି-ନାଥ ବିଜେ କରାଇବା ଦେଖିଲି ନାହିଁ ନୟନେ ସେ
ଘଣ ଘଣକ ସୁଖ
ଖଣ୍ଡେ ଅଶେଷ ଜନମ ଦୁଃଖ ସେ ।
ଖେଦ-ତମିର ଶୀତ-ମୟୂଖ ସେ ।
ଖମଣ୍ଡଳେ ଦେଖିଥିବେ ଲୋକ ସେ । ୨ ।

ଗୀତ ବାଦ୍ୟ ନୃତ୍ୟ ଅତି ଅପ୍ରମିତ ଅନେକ ଛତ୍ରଉଦଧି
ଗହଳେ ହୁଲା ଦହୁଡ଼ି ଲାଗି ହୃତ କରବା ଚନ୍ଦ୍ରଉଦଧି ସେ
ଗଲା ନ କହ ମତେ
ଗଣ୍ଡି ନୋହିବ ଅବା କେମନ୍ତେ ସେ ।
ଗୁଣୁଅଛୁ ଏହି କଥା ଚିତ୍ତେ ସେ ।
ଗୋ ଦେଖିଲୁ କୃଷ୍ଣା ଅରତେ ସେ । ୩ ।

ଘଟଣ ଅକାଶ ମଣ୍ଡଳେ ମଣ୍ଡିତ ନୋହିଲା ବାରେ ଲୋଚନ
ଘୋଷିଲି ନାହିଁ ଘନଶ୍ୟାମ ସୁନ୍ଦର ନାମ ଅମୃତ ବଚନ ସେ
ଘନ ଘଣ୍ଟା ଶବଦ
ଯେନ ମର୍ଦ୍ଦଳ ମଧୁର ନାଦ ସେ ।
ଘୋଟି ଯାଉଥିବ ବିଷ୍ଣୁ ପଦ ସେ ।
ଘୂର୍ଣ୍ଣେ ଯାହା ଶୁଣି ଘନ ମୃଦ ସେ । ୪ ।

ନୟନାନନ୍ଦ ଶ୍ରୀ ନୀଳାମ୍ବର ଲୀଳା ବଳେ ମତ୍ତ ସିଦ୍ଧ ଠାଣି
ନ ପାରିଲି ଦେଖି ଅହା ସେ ରଙ୍ଗିମା ନେହ ଭଙ୍ଗିମା ଚାହାଁଣୀ ସେ
ନିଶାକାନ୍ତ-ବଦନ
ନେତ୍ର-ଚକୋର-ସୁଖ-ସଦନ ସେ ।
ନାନା ଦୁଃଖ-ତିମିର-ଛେଦନ ସେ ।
ନୃପ-ମନ-କୁମୁଦ-ମୋଦନ ସେ । ୫ ।

ଚିତ୍ର ନୀଳ ପର୍ବତରେ ଝଟନ୍ତି ରଜତ ଶୃଙ୍ଗ ପରାଏ
ଚରାଚର ନାଥ ମଣ୍ଡିବାରୁ ମଞ୍ଚ ମଣ୍ଡପକୁ ଅଭିଳାଷେ ସେ
ଚକ୍ଷୁ ପଥରେ ଅସି
ଚାହିଁ ଚାହିଁ ଯାଉଅଛନ୍ତି ମିଶି ସେ
ଚିତ୍ତ ନଉଛନ୍ତି ବଳେ ଅକର୍ଷି ସେ ।
ଚନ୍ଦ୍ର ଚନ୍ଦ୍ରକୁ ଦେଉଛନ୍ତି ନାଶି ସେ । ୬ ।

ଛଡ଼ ଚଳା ଅପସାର ଚଳା ଅଖି ଚାହିଁ ଉଛୁଳାଇବା ବେଳେ
ଛଛନ ହୋଇ ମୁଁ ଦେଖି ନ ପାରିଲି ଅହା ସେ ମହା ଗହଳି ସେ
ଛତ୍ର ଚାମର ବାସେ
ଛାଇ ହୋଇଥିବେ ଚଉପାଶେ ସେ ।
ଛାୟାନାଥ ଚନ୍ଦ୍ର ଯହିଁ ବସେ ସେ ।
ଛାୟାରେ ମନ ନୟନ ତୋଷେ ସେ । ୭ ।

ଜଗମୋହନରୁ ଶ୍ରୀ ଜଗମୋହନ ବାହାର ହେବା ସମୟେ
ଯାଉନାହିଁ ମୋର ମନରୁ ସେ ଶୋଭା ଯେମନ୍ତ ସେ ସୁଖମୟେ ସେ
ଯଉଁ ଦିବ୍ୟଶ୍ରୀ ଯାଗ

ଯୋଗୀ ଯୋଗ କରେ ଉଦବେଗ ସେ ।
ଯାହା ଦେଖି ବଢ଼େ ଅନୁରାଗ ସେ ।
ଯାଉ ଜୀବ ତା ସୁନ୍ଦର ଅଗ ସେ । ୮ ।

ଝୁଲନ୍ତା ମତ୍ତଗଜ ପ୍ରାୟେ ଝୁଲି ସେ ବେଦ ପାଶକୁ ଗୁହାଁବା
ଝମକିଲା ପିନ୍ଧ ପଟାପ୍ରେ ଦମକ ଝଲକ ଯାଇଁ ରହିବା ମେ
ଝଳ ଚନ୍ଦ୍ରମା ମୁଖ

ଝଟେ ଝଟେ ଝଟକିବା ସୁଖ ସେ ।
ଝୋଲ ବିନ୍ଦୁକୁ କର୍ପୂର ରେଖ ସେ ।
ଝେମିଡକେ ଝରେ କେତେ ଦୁଃଖ ସେ । ୯ ।

ନଟି ଦାବଶ ସମାନ କର ବଳେ କଟିବା ସ୍ଥାନ ମଣ୍ଡପେ
ନୋହିଲା ନୟୂନ ଅଙ୍ଗେ ସୁନ୍ଦର ସେଭା ଲାଗି ଶୋଭା ରୂପେ ସେ
ନାନା ଜଳଠରେ ସ୍ଥାନ

ନାଶ କରେ ନାନା ଦୁଃଖମାନ ସେ ।
ନାହିଁ କଲି ଗର୍ଭଜଲ ସ୍ଥାନ ସେ ।
ନଷ୍ଟେ ଦେଲା ଚଉବର୍ଗ ଦାନ ସେ । ୧୦ ।

ଟେକ ଉତ୍କଳ ପର୍ବତରୁ ନିର୍ଝର ଝରିଲା ପ୍ରାୟେକ ହୋଇ
ଟେଳ ଅପଟେଜ୍ ଶ୍ରୀମୁଖୁଁ ଜଳଧାର ଟେକି ଅନାଇଲ ନାହିଁ ସେ
ଟେକ ଚନ୍ଦନ ପଙ୍କ

ଟେକେ ମୂରେ ଶ୍ରୀମୁଖ ଶଶାଙ୍କ ସେ ।
ଟେକେ ହରନ୍ତି ଭବ ଆତଙ୍କ ସେ ।
ଟାଣ ପାପୀଙ୍କି କଲ୍ଲ ନିଶଙ୍କ ସେ । ୧୧ ।

ଠାଠିକ କରି ଠାକୁର ଘନ ଜଳ ଅନନ୍ତେ ନ କଲ ସେବା
ଠେଲାଠେଲି ପେଲାପେଲି ଯହିଁପାଇଁ ସକଳ ମାନବ ଦେବା ସେ
ଠଣ ପଦ୍ମ ନୟନ
ଠିକେ ଦେଖିଲ୍ଲ ନାହିଁ ନୟନ ସେ ।
ଠାବ କରନ୍ତା ଗତି ନୟନ ସେ ।
ଠୁଲେ ଲଭନ୍ତା ଆନନ୍ଦ ଦାନ ସେ । ୧୨ ।

ଡୋବଲ ନ ଦେଖିଲ୍ ପୀତବାସ ଲାଗି ଡାଲମ୍ବନେତ୍ରା ପ[illegible]ା
ଢେଉର ହୋଇଛନ୍ତି ଏବେବେଢେଁ ଶ୍ରୀମ ଅଙ୍ଗେ କରି ଦର୍ଶନ ବାଞ୍ଛା ସେ
ଡକା କଲ୍ଲ ଦଇବ
ଡାକ ଦେଲ୍ଲ କେତେ ପରିଭବ ସେ
ଡାଲମ୍ବୁଗ କର ମୋ ସ୍ବଭାବ ସେ
ଡଅଇଁବାରେ ଦେଲ୍ଲ ସେ ଭାବ ସେ । ୧୩ ।

ଢାଲେ ନ ଦେଖିଲ୍ ନୀଳାଦ୍ରିସିଂହାର ନାନା ଫୁଲେ ହାଥୀ ସାଜ
ଢୋକଲ୍ଲ ଅମୃତ ହାଥୁଁ ନେଇ ମତେ ଏହା କଲ୍ଲ କୁଣ୍ଡଧ୍ବଜ ସେ
ଢାଲେ ହୋଇଲ ନାଶ
ଢଗ ପସରାକୁ କରି ଆଶ ସେ
ଢମ ପଣେ ହୋଇଲ ଅବେଶ ସେ
ଢାଲେ ନ ଚିହ୍ନିଲ ଜଗଦୀଶ ସେ । ୧୪ ।

ଅହା ସେ ଫୁଲ ଚୂଲ କର ପଲ୍ଲବ ଅହା ସେ ଅଳକା ପନ୍ତି
ଅହା ସେ ଫୁଲମାନଙ୍କରେ ବିସ୍ତାର ହୃଦପୃଟରେ ଯନ୍ତ୍ରାଯନ୍ତ୍ର ସେ
ଅହା ସେ ଶୋଭା ଦେଖି
ଅଛ ପବିତ୍ର କରନ୍ତି ଅଖି ସେ । ଅନନ୍ଦରେ ହୋଉଥାନ୍ତି ସୁଖୀ ସେ
ଅଉ କାହିଁକି ହୁଅନ୍ତି ଦୁଖୀ ସେ । ୧୫ ।

ତ୍ରୈଲୋକ୍ୟ ମୋହନ ତ୍ରିତାପ ଦହନ ମଧୁର ମୂର୍ତ୍ତିଟି ଗ୍ରହି
ତ୍ରାହି କରି ମହାପ୍ରଭୁ ମହାବାହୁ ବୋଲି ଡାକ ଦେଲି ନାହିଁ ସେ
ତେଣୁ ସମସ୍ତ ଗଲା
ତନୁ ତାପ ମୋହର ନ ଗଲା ସେ ।
ତହିଁ ଯେତେ ମୋର ଅଶା ଥିଲା ସେ ।
ତେତେ ଦଇବ ନିରାଶ କଲା ସେ । ୧୬ ।

ଥାବର ଜଙ୍ଗମ କାଠ ପତଙ୍ଗରେ କାହିଁ ମୁଁ ନୋହିଲି ଲେଖା
ଥରେ ନ ଦେଖିଲି ଚନ୍ଦ୍ରମାବଦନେ କର୍ପୂର ଚନ୍ଦନ ରେଖା ସେ
ଥିଲା କର୍ମରେ ଏହା
ଥାଉ ପ୍ରାଣେ ନ ଦେଖିବି ତାହା ସେ
ଥାଉ ଅମୃତ ବଚେ ଯୋରେହା ସେ
ଥରେ ପ୍ରଭୁହିଁ ନ କଲେ ଅହା ସେ । ୧୭ ।

ଦୀନଜନ ବନ୍ଧୁ ଦୟେନ୍ଦ୍ରୀ ଭୂଷଣ ଦୟାସିନ୍ଧୁ ଜଗନ୍ନାଥ
ଦାଣ୍ଡ ଯାକ ପୂରି ଦେଖୁଥିବେ ଲୋକେ ଅହା ଶଙ୍ଖ ଚକ୍ର ହାଥ ସେ
ଦିବ୍ୟ ସୁବେଶ ଶୋଭା
ଦରଶନେ କେ ନୋହିବ ଲୋଭା ସେ
ଦେବତାଙ୍କ କରଥିବ ଲୋଭା ସେ
ଦଶଦିଗେ ପୂରିଥିବ ପ୍ରଭା ସେ । ୧୮ ।

ଧବଳ ଛତ୍ର ଚାମର ଚନ୍ଦ୍ର ସୂର୍ଯ୍ୟ ତନ୍ତ୍ରସ ମେଘ ଡମ୍ବର
ଧରଣୀଧର ପ୍ରଭୁଙ୍କ ପାଶରେ କି ଦଶୁଥିବେ ଆଡମ୍ବର
ଧନ୍ୟ ସେବକ ଜନେ

ଧର ଚନ୍ଦନ ଜଳ ବସନେ ସେ
ଧର ଧର ବୋଲି ତୋଷ ମନେ ସେ
ଧୀରେ ଦେଉଥିବେ ଯଜମାନେ ସେ । ୧୯ ।

ନୀଳାଦ୍ରି ସିଂହ ସ୍ତମ୍ଭରେ ନୃପ ସିଂହ ପଟୋଆର ହୋଇ ରହି
ନିଶାଙ୍କଙ୍କୁ ଚକୋରପନ୍ତି ପ୍ରାୟେ ସମସ୍ତେହେଁ ଥିବେ ଚାହିଁ ସେ
ନାନା ପ୍ରକାରେ ଗୀତ

ନାନା ବାଦ୍ୟ ନାନା ରୂପେ ନୃତ୍ୟ ସେ
ନଚନ୍ତରେ ହେବାରୁ ଏକାଗ୍ର ସେ
ନରନାଥ ଉତ୍କଳଙ୍କ ଚନ୍ଦ ସେ । ୨୦ ।

ପୋଡୁ ପୋଡ଼ୁ ମୋର ପାପିଷ୍ଠ କରମ ଧିକ ଧିକ ମୋ ଜୀବନ
ପଦ୍ମଲୋଚନ ଧୂପ ଦୀପ ଅଳତି କଲି ନାହିଁ ଦରଶନ ସେ
ପରମାନନ୍ଦ ସୁଖ

ପରଶରେହେଁ ପଳାନ୍ତା ଦୁଃଖ ସେ
ପଲକେହେଁ ନ ଛାଡ଼ନ୍ତି ପାଖ ସେ
ପୁଷ୍ପ ସେତେ କରେ ଶିଳୀମୁଖ ସେ । ୨୧ ।

ଫୁଲମାଳ ଚୂଳ ଉଲଗି କର ସେ ସେବକେ ଅଙ୍ଗେ ଦିଶିବା
ଫଳଲୋଭେ ମଦ୍ଦା କଳପ ବୃକ୍ଷକୁ ବେଢ଼ିଲା ପ୍ରାୟେ ଦଶିବା ସେ
ଫୁରୁଅଛୁ ଲୋଚନେ

ଫେଉଁ କହିବ କେତେ ବର୍ଣ୍ଣନ ସେ
ଫଣୀଧର ଧରର ଯାହା ମନେ ସେ
ଫନା ଏହିଷ୍ଟ ଭବମୋଚନେ ସେ । ୧୨ ।

ବାମଦେବ କଇଳାସ ପର୍ବତରୁ ଓଁକାରଲୀ ପ୍ରାପ୍ୟେ ହୋଇ
ବାହୁଡ଼ା ବଳେ କରିବା ନ ଦେଖିଲି ଦେବଙ୍କ ପ୍ରାଣଯାଇଁ ସେ
ବନ୍ଦାପନା ବଢ଼ାଇ
ବେନ ପାଶକୁ ବୁଷ ଅନାଇ ସେ
ବାଞ୍ଛାପୂର୍ଣ୍ଣ ଲୋକଙ୍କୁ କରାଇ ।
ବଡ଼ ଦେଉଳେ ପଶିଲେ ଯାଇଁ ସେ । ୧୩ ।

ଭଦ୍ର ଦାମ୍ପିନୀ ସୁଭଦ୍ରାଙ୍କ ବିଜୟେ ଝଂଟିକ ବାଜୁଲି ପ୍ରାପ୍ୟେ
ଝଲି ଝଂଟିକି ଅଦୃଶ୍ୟ ହୋଇଥିବେ ଘଣ୍ଟିଶ୍ର ଭୂଷଣ ଯାପ୍ୟେ ସେ
ଭଲା ଭଲା ସେ ଛବି
ଭବଭୟ-ପର୍ବତକୁ ପବି ସେ
ଭକ୍ତଜନ-ମନ-ପଦ୍ମ-ରବି ସେ
ଭାଗ୍ୟ ଥିଲେ ସେ ଛବିକି ଲଭ ସେ । ୧୪ ।

ମର୍କଟ ପର୍ବତ ଶୃଙ୍ଗ ପ୍ରାପ୍ୟେ ହୋଇ ମହାବାହୁ ଥିବେ ରହି
ମହା ମେଘକୁ ଶୃଙ୍ଗକ ପକ୍ଷୀ ପ୍ରାପ୍ୟେ ଭକ୍ତଜନେ ଥିବେ ଚାହିଁ ସେ
ମାଳ ଚଳିଁ ଉଲ୍ଲାସ
ମନ ହେବେ ଅବନ୍ଦ ବିସ୍ତାର ସେ
ମହା କଷ୍ଟୀ ଲୋକଙ୍କ ନିସ୍ତାର ସେ
ମହା ମହୋତ୍ସବ ଥିବେ କରି ସେ । ୧୫ ।

ଜଗତବ୍ରହ୍ମାଣ୍ଡ ଧରକୁ ଧରି ସେ ଚକ୍ରା ଛଡ଼ାଇବା ବେଳେ
ଜଗତ ଯାକ ଉଚ୍ଛୁଳ ପଡ଼ୁଥିବ ଜୟ ଶବଦ ଗହଳେ ସେ
ଯଉଁ ସୁଖ ସେ କାଳେ ।
ଯୋଗୀ ନ ଜାଣନ୍ତି ଯୋଗବଳେ ଯେ । ଜୀବ ପରମକୁ ଯେନ ଖେଳେ ହେ ।
ଜାଣିଥିବ ସେ ଦେଖିଛୁ ଡୋଳେ ସେ । ୨୬ ।

ଚଳନ୍ତ-ଗିରି ଶିଖରୁ ମତ୍ତଗଜ ପଡ଼ିଲା ପରାଏ ହୋଇ
ଟ୍ଟଜୀବ ନୟନ ବଜାଏ ନନ୍ଦିଙ୍କୁ ଶ୍ରୀକର-ପଲ୍ଲବ ଦେଇ ହେ
ରହୁ ଦକ୍ଷିଣ ମୁଖେ ।
ରକ୍ଷି ସେବକମାନଙ୍କୁ ପାଖେ ସେ । ରଙ୍ଗେ ବନ୍ଦାପନା ହେବା ସୁଖେ ସେ
ରହିଥିବେ ଲୋକେ ଯେଝା ସୁଖେ ସେ । ୨୭ ।

ଲବଣ୍ୟ ବାରିଧି ଲୀଳା ବଳେ ସୁଧା ଜଳଧିରେ ପଡ଼ି ଜନେ
ଲୋଲାହିତ ହୋଇ ସ୍ନାନ କରୁଥିବେ ପରମ ଆନନ୍ଦ ମନେ ସେ
ଲୀଳା ଏବେ ସୁମର ।
ଲୋକେ ହୃଦୟ ହୋଉଛୁ ଭାବି ସେ । ଲୋଚକରେ ନୋହ ଅନ୍ତୁ
ହେବି ସେ ।
ଲକ୍ଷେ ଗୁଣେ ପ୍ରେମ ହୁଏ ଭେଉ ସେ । ୨୮ ।

ବାହାକୁ ବାହା ହୁଅନ୍ତୁ ହୁଅ ଭର ପିଠିକ ପିଠି କେ ଦେଇ
ବଚବଗଡ଼ କରିବାରୁ ହୁଙ୍କାର ଧ୍ୱନିମାନ ଥିବ ହୋଇ ସେ
ବସ୍ତୁ ପାଦ ଶବଦ
ବ୍ରହ୍ମାଣ୍ଡରେ ବାଜ ପ୍ରତି ନାଦ ସେ । ବସ୍ତୁ ପଦ କରିଥିବ ଭେଦ ସେ ।
ବନାଶିବ ସଂସାର ପ୍ରମାଦ ସେ । ୨୯ ।

ଶ୍ରୀଅଙ୍ଗ ଚ୍ଛୁବାସ ପୂରି ଦଶଦଶ ସବୁରି ମନ ତୋଷିବ।
ସୁଧାବନ୍ଦୁ ପ୍ରାୟେ ସ୍ୱର୍ଗରୁ ସବତେ ଫୁଲମାନ ବରଷିବ। ସେ
ଶୋଭା କହିବ କେତେ।
ସିନ୍ଧୁ ଲହରୀ କଲ୍ଲ ବ ଚିତ୍ତେ ସେ।
ସବୁପ୍ରକାରେହେଁ ନୋହେ ପ୍ରତେ ସେ
ସ୍ୱରମାର୍ଗ ବୋଲି ଏତେ ତେତେ ସେ। ୩୦।

ସିଂହ ପର୍ବତ କନ୍ଦରୁ ପ୍ରବେଶ ପର୍ଯ୍ୟନ୍ତ ଅତି ସତ୍ୱରେ
ଶ୍ରୀ ଜଗମୋହନ ବିଜେ କରିଥିବେ ଶ୍ରୀଜଗମୋହନ ଘରେ ସେ
ସୁଧାକର ଯେମନ୍ତ।
ଶ୍ୱେତ ମେଘେ ହୋଯ୍ୟେ ଅବଦାତ ସେ। ସେହି ରୂପେ ସେ କମଳାକାନ୍ତ ସେ
ଶୀଘ୍ରେ ହୋଇଲେ ଅନ୍ତରହିତ ସେ। ୩୧।

ସକଳ ବ୍ରହ୍ମାଣ୍ଡ ନାଥ ସବୁ ସୁଖ ଶ୍ରୀ ଗୋପୀନାଥଙ୍କୁ ଦେଇ
ଶୁଭେ ବିଜେ କଲେ ଅଣଆପସରେ ଛାମୁରେ ତାଙ୍କି ବନ୍ଧାଇ ସେ
ସ୍ନାନ ଯାତ୍ରାହିଁ ଗଲା।
ଶ୍ରୀଗୁଣ୍ଡିଚ୍ଚ ନିକଟ ହୋଇଲା ସେ। ସବୁ ଆଡ଼େ ଉଗ୍ରତା ହୋଇଲା
ସଜ ହେବାକୁ ମନ ଧାଇଁଲା ସେ। ୩୨।

ହୃଦୟ ଏତେବେଳେ ଯାହା ହୋଉଛି କାହାକୁ କହିବ ତାହା
ହରି ବାହାରେ ଏ ଦୁଖ ଜାଣିମାଲୁ ଅଉ କେହି ନାହିଁ ସାହା ସେ
ହାନିଲାଭ କରତା।
ହେଲେ ପରମପଦ ବିଧାତା ସେ। ହର ବ୍ରହ୍ମାଦି ଦେବ ଦେବତା ସେ
ହେବେ ସତେ ପ୍ରଭୁ ପ୍ରସନ୍ନତା ସେ। ୩୩।

କ୍ଷମାସାଗର ନାଗରବର ଅଟ୍ଟେ ପ୍ରଭୁ କୃପା-ରତ୍ନାକର
କ୍ଷଣକେ ନନ୍ଦଘୋଷ ରଥେ ବିଜୟେ ଦରଶନ ଦତ୍ତ କର ସେ
କ୍ଷେତ୍ରବରକୁ ନେଇ ।
କ୍ଷାର କ୍ଷୋଭ ମନରୁ ଛଡ଼ାଇ ସେ । କ୍ଷେମେ ନେଇ ଉତ୍ସବ କରାଇ ସେ
କ୍ଷାନ୍ତ କ୍ଷଣେ ଛଡ଼ାଇବ ନାହିଁ ସେ । ୩୪ ।



# ଜଗବନ୍ଧୁ ଜଣାଣ ଚଉତିଶା

ନବଜନ୍ମର ଅନୁଷ୍ଠାନବୋଧକରୂପେ ଜଗବନ୍ଧୁ ଜଣାଣ ଚଉତିଶାର ସ୍ଥାନ ଉଚ୍ଚ । ଚଉତିଶାରୂପେ ଏହାର ବଶିଷ୍ଟତା ଏହି ଯେ ଏହା ୧୭ ପଦରେ ଶେଷ ହୋଇଅଛି ; ଗୋଟିଏ ପଦରେ ଦୁଇଟି ଅକ୍ଷର ମୂଳକ ପାଦ ରହିଅଛି ।

କରମ ବାମ ମୋର ଅହେ କରୁଣାକର !
କହୁଛି ଅନେକ ପ୍ରକାର
ଖୀରାର୍ଣ୍ଣବରେ ଘର ଖିତି ଭାର ଉଦ୍ଧାର
ଖଗେଶ୍ୱର ନାମ ତୁମ୍ଭର
ହେ ଜଗବନ୍ଧୁ ! । ୧ ।

ଗଜଙ୍କୁ ଯେ ଉଦ୍ଧାର ଗ୍ରାହଙ୍କୁ କର ପାର
ଗରୁଡ଼ ପୃଷ୍ଠରେ ବିହାର
ଘୋର ବିପତ୍ତି ଘାର ଘେନ ମନ୍ଦର-ଧର
ଘଡ଼କେ ଇନ୍ଦ୍ରପଦ ଦୂର
ହେ ଜଗବନ୍ଧୁ ! । ୨ ।

ଉଦ୍ଧାର ହେବା ପାଇଁ ଅଶା ତ୍ରୈଲୋକ୍ୟ ସାଇଁ
ଅଶା ମୋ ପୂର୍ଣ୍ଣ କଲ ନାହିଁ
ଚନ୍ତ୍ର ଦ୍ରୌପଦୀ ସଙ୍ଗ ଚନ୍ତ୍ରାରୁ ହେଲେ ମୁକ୍ତି
ଚାହିଁଥିଲେ ଲକ୍ଷେ ନୃପତି
ହେ ଜଗବନ୍ଧୁ ! । ୩ ।

ଛପନକୋଟି ଶାଢ଼ୀ          ଛପ୍ପା ମାପ୍ପା ସଜାଡ଼ି

ଛର ଦୁଃଖ ନ ପାରେ କାଢ଼ି

ଯାଏ ଲଙ୍କାରେ ଫେଧ          ଯଶ ରଖ ଶ୍ରୀଧର

ଜଗତେ କଲ କେତେ ପାର

ହେ ଜଗବନ୍ଧୁ ! । ୪ ।

ଝୁରେ କପୋତ ପର          ଝୁରି ଝୁରି ସୁମରୁ

ଝିମିଟେ ନ ଶୁଣ ଗୁହାର

ଞଟରଖ ପ୍ରାଣୀ ମୁହିଁ          'ନାହିଁ ସାହା ମୋ କେହି

ନ କଲ ଭବୁ ମୋତେ ଚାହିଁ

ହେ ଜଗବନ୍ଧୁ ! । ୫ ।

ଟାଣ ଭାଙ୍ଗ ଶ୍ରୀଧର          ଠେଲାଅ ମେରୁବର

ଟକାଏ ନ ଦଅ ଉତ୍ତର

ଠାବ ପାଇଲି ନାହିଁ          .ଠାକୁର ଲକ୍ଷ୍ମୀସାଇଁ,

ଠିକେ ମୁଁ ଜଣାଣ କରଇ

ହେ ଜଗବନ୍ଧୁ ! । ୬ ।

ଡାକନ୍ତି ବେଦବର          ଡାକ ଶୁଣି କର୍ଣ୍ଣିର

ଡେଇଁ ତ ପଡ଼ିଲ ଜଳର

ଢଳ ମଚ୍ଛ ଆକାର          ଢାଳେ ଅସୁର ମାର

ଢାଳେ ତୋଷିଲ ବେଦବର

ହେ ଜଗବନ୍ଧୁ ! । ୭ ।

ଅନନ୍ତ ଯା ନାମନ୍ତ          ବେଦେ ନ ପାନ୍ତି ଅନ୍ତ

ଅ ରଯଜନକୁ ତାର ତ

ତେଣୁ ଭରସା ପାଇ  ତରିବି ବୋଲି ମୁହିଁ
ତିଳେହେଁ ଦୟା କଲ ନାହିଁ
ହେ ଜଗବନ୍ଧୁ ! । ୮ ।

ଥିର ଜଳରେ ମୁହିଁ  ଥକଚେ ଅଛି ରହି
ଥୟ ମୋ ବୁଦ୍ଧି ଦନ୍ତ ନାହିଁ
ଦାତା କର୍ଣ୍ଣ ଦୁଆର  ଦାନ ନେଲ ଶ୍ରୀଧର
ଦେଲ ପୁତ୍ରକୁ ମାରି ତାର
ହେ ଜଗବନ୍ଧୁ ! । ୯ ।

ଧରି ବାମନ ରୂପ  ଧୀରେ ବଳିଙ୍କ ଭୂପ
ଧାୟି ରହିଲେ କଳ୍ପକଳ୍ପ
ନୃସିଂହ ରୂପ ଧରି  ନଖେ ହିରଣ୍ୟ ଚିରି
ନଦାନ ବିପତ୍ତିରୁ ତାରି
ହେ ଜଗବନ୍ଧୁ ! । ୧୦ ।

ପ୍ରହଲ୍ଲାଦ ରଖିଲ  ପ୍ରଭୁ ସଦୟ ହେଲ
ପାପୀ ହିରଣ୍ୟ ସ୍ୱର୍ଗ ନେଲ
ଫାନ୍ଦ ଯେ ଅଛି ମୋତେ  ଫନ୍ଦା ଚରଣାଗ୍ରଙ୍ଗେ
ଫାନ୍ଦୁ ମୁଁ ତରିବି କେମନ୍ତେ
ହେ ଜଗବନ୍ଧୁ ! । ୧୧ ।

ବାମ କରମ ପୁଣି  ବନ୍ଧୁ ଦେଲ କଷଣ
ବହୁ ତ କରୁଛି ଘଟଣ
ଭାଙ୍ଗିଲ ଲଙ୍କା ପୁର  ଭ୍ରାନ୍ତ ଯେ ଦେବଙ୍କର
ଭୟରୁ କରିଲ ନିବାର
ହେ ଜଗବନ୍ଧୁ ! । ୧୨ ।

ମଲେ ରାବଣ ବଂଶ — ପଦ୍ମାରୁ ଗଲା ହାସ
ମୋତେ ତ କରିଲ ନିରାଶ
ଜାତ ତ ମଥୁରା ଅର୍ଥ — ଯା ନାମ ଲକ୍ଷ୍ମୀକାନ୍ତ
ଯଶୋଦାଙ୍କର ହେଲ ସୁତ
ହେ ଜଗବନ୍ଧୁ ! । ୧୩ ।

ରହିଲ ଗୋପପୁର — ରସିକ ଦାମୋଦର
ରସେ ମୋହିଲ ନାରୀନର
ଲବଣ୍ୟବଣ୍ୟ ମୂର୍ତ୍ତି — ଲକ୍ଷ ଲକ୍ଷ ଯୁବତୀ
ଲୋଭେ କରିଲେ ପ୍ରାଣପତି
ହେ ଜଗବନ୍ଧୁ ! । ୧୪ ।

ବୃନ୍ଦାବନରେ ବାସ — ବାମାଙ୍କୁ ଦେଲ ବଶ
ବାଲ୍ୟକାଳରେ କଲ ରାସ
ସାରଙ୍ଗ ଧାରୀ ହରି — ସଂସାରୁ କର ପାରି
ଶୋକେ ମୁଁ ଯାଉଅଛି ସରି
ହେ ଜଗବନ୍ଧୁ ! । ୧୫ ।

ଶୋକ ମୋତେ ପଡ଼ିଛି — ସରିଯାଉଛି ପୁଣ
ଶ୍ରୀଧର ଭୁଲେ ନ ଭଜଣ
ଶିବ ବ୍ରହ୍ମା ଅଦୃଶ୍ୟ — ସେବା କରନ୍ତି ନିତ୍ୟ
ସିଦ୍ଧ ମୋ ହୋଇବା ନିମନ୍ତ
ହେ ଜଗବନ୍ଧୁ ! । ୧୬ ।

ହୃଦୟେ ମୋ ବସ୍ତିର      ହୃଷୀକେଶ ତ ପାର
ହ୍ଲାନ ମୋ କର୍ମଙ୍କୁ ଦୂର
କ୍ଷେମେ କ୍ଷାଧି ଭଣଇ      କ୍ଷମାକାଂକ୍ଷ ଯାଚି
କ୍ଷମା କରିବେ ଭବତ୍ରାଣୀ
ହେ ଜଗବନ୍ଧୁ ! । ୧୭ ।

---

# ସୀତାନୁଚିନ୍ତା ଚଉତିଶା

ଯେତେଦୂର ଜଣାଯାଏ ଏ ଚଉତିଶା ଅତି ପ୍ରାଚୀନ । ଗ୍ରାମ୍ୟଲୋକଙ୍କ ଭଜନମାନଙ୍କ ଭିତରେ ଏହାର ସ୍ଥାନ ଅତି ଉଚ୍ଚରେ । ଏହାର ସୌନ୍ଦର୍ଯ୍ୟ ପ୍ରଭାବ ପାଠକ ନିକଟରେ ସୀତାଚରିତ୍ରର ଉଜ୍ଜ୍ୱଳତା ଅତି ଅନ୍ତର୍ଦ୍ଦୃଷ୍ଟିରେ ପ୍ରକାଶିତ କରେ ।

କମଳମୁଖୀ ସୀତା ରାମ ବିହୁନେ
କାନ୍ଦନ୍ତି ବସି ଚିନ୍ତା ଅଶୋକବନେ ଯେ ।
କାହୁଁ ପାଇବି ଆଉ ପ୍ରଭୁର ମୁଖ
କର୍ମେ ବିଧାତା ଲେଖିଥିଲା ଏ ଦୁଃଖ ଯେ । ୧ ।

ଖେଦରେ ସିନ୍ଧୁ ତରିବେ ସେ କେମନ୍ତେ
ଖଳ ଦଇତ ହରି ଆଣିଲା ମୋତେ ଯେ ।
ଖାଇବି ବିଷ ନାହିଁ ଜୀବନେ ଆଶ
ଖଣ୍ଡିଲା ବିହି ମୋତେ ଖାଇବା ଗ୍ରାସ ଯେ । ୨ ।

ଗୁଣନିଧିଙ୍କି ହେଲା ମନ୍ଦର ଅତି
ଗୃହ ଅଇଲେ ଦେଖି କୋଦଣ୍ଡଧାରୀ ଯେ ।
ଗହନ ବନେ ସଖା ଭାଇ ଲକ୍ଷ୍ମଣ
ଗଲାର କଣ୍ଠେ ରାମ ହୃଦଭୂଷଣ ଯେ । ୩ ।

ଘଟଣ ଗୁଣମଣି ହୃଦବଦ୍ଧାରୀ
ଘେନି ଅଇଲେ ଘରୁ ମୂର୍ଚ୍ଛି ନ ପାରି ଯେ
ଘରକୁ ଗଲେ କସ ବୋଲିବେ ମାତା
ଘେନିଗଲା ସଙ୍ଗରେ କାହିଁକି ସୀତା ହେ । ୪ ।

ନିଷ୍ଠୁର ବାଣୀ ରାମ ବଚନ ସତ୍ୟ
ନିଷ୍ଠେ ପାଳିବେ ସ୍ୱାମୀ ପିତାଙ୍କ ବ୍ରତ ଯେ
ନ ଯିବେ ଅଯୋଧ୍ୟାକୁ ନୋହିବେ ଭଗ୍ନ
ନିସ୍ପୃମ କରିଛନ୍ତି ଛୁଇଁଣ ଦେବା ଯେ । ୫ ।

ଚନ୍ଦ୍ରବଦନ ନବଦଳ କମଳ
ଚନ୍ଦ୍ରକୁ ଜିଣି ଶୋଭା ମୁଖ ମଣ୍ଡଳ ଯେ
ଚାହିଁବି ନକ ଆଉ ପ୍ରଭୁଙ୍କ ମୁଖ
ଚନ୍ଦ୍ର ବବାଦେ ଯେସନେ କୁମୁଦ ମୁଖ ହେ । ୬ ।

ଛଳଳ ଗାତ୍ରବର ଛୁଆ ହରଣ
ଛଟକ ଗୁଲ୍ମ ରାମ ସିନ୍ଧୁର ଠାଣ ଯେ
ଛଇଳ ଗୁଣନିଧି ଗୁଣରା ମଣି
ଛଡ଼ାଏ ସଙ୍ଗ ମୋତେ ଦଇବ ଆଣି ଯେ । ୭ ।

ଯେତେବେ ଜୀବନେ ଥିବେ ରାମ ମୋ ଜୀଇ
ଜଣେ ସନ୍ଦେଶ କେହି କହିଲେ ନାହିଁ ଯେ
ଯେଣେ ଚାହିଁବ ତେଣେ ସମସ୍ତେ ପର
ଜଣେ ଏଥିରେ କେହି ନାହାନ୍ତି ମୋର ଯେ । ୮ ।

ଝୁରୁ ଯେ ଥିବେ ରାମ ଯେବେ ଲକ୍ଷ୍ମଣ
ଝୁରୁ ଝୁରୁ ଯେ କାନ୍ତ ହୋଇବେ କ୍ଷୀଣ ଯେ
ଝିମଣ୍ଟେ ରାମ ମୋତେ ନ ପାରେ ମୂର୍ଚ୍ଛି
ଝାଡ଼ିକୁ ଅଣି ବହ୍ନି ବାଦେ ଲାଗିଛି ହେ । ୯ ।

ନିର୍ମଳ ଶ୍ୟାମ ମେଘ ପ୍ରାୟେକ ତନୁ
ନୀଳ କୁନ୍ତଳ ତାଙ୍କ ବାସବ ଧନୁ ଯେ

ନୟନ ବେନି ଚନ୍ଦ୍ର ସୂର୍ଯ୍ୟ ଯେସନ
ନାହିଁ ଭୁଲ ଦେବାକୁ ତିନି ଭୁବନ ଯେ । ୧୦ ।

ଟାହି-ଟମାଳ-ବଣ୍ୟ ବିନୋଦ ଯେତେ
ଟଙ୍କଧର-ଅନୁଚର ଜାଣନ୍ତି ଚତୁରେ ଯେ
ଟେକି କାହାକୁ ହସି କହିବେ କଥା
ଟାଙ୍କ ବିଧାତା ମୋତେ ଦେଲା ଅବସ୍ଥା ଯେ । ୧୧ ।

ଠିକ ଲାବଣ୍ୟ ଚନ୍ଦ୍ର ଊଣ ଶ୍ରୀମୁଖ
ଠିକେ ଦେଖିଲେ ଯିବ ଅଶେଷ ଦୁଃଖ ଯେ
ଠୁଳନଥିବ ଆଉ ସତେ ପାଇବ
ଠିକ ବେଦନା ଯେତେ ସବୁ କହିବ ଯେ । ୧୨ ।

ଡଙ୍କର ଦୈତ୍ୟ ମୋତେ ରଖିଲା ଆଣି
ଡରାଇ ବୋଲେ ମୋର ହୁଅ ଘରଣୀ ଯେ
ଡାକି ଅସୁର ମୋତେ ଜଗାଇ ବାଟ
ଡାକିନୀ ପ୍ରାୟେ ଜଗିଛନ୍ତି ସମସ୍ତ ଯେ । ୧୩ ।

ଢୋକିବି ବିଷ ମୁଁ ଯେ ମରିବି ବୋଲି
ଢଳ ପଡ଼ିବେ ରାମ ଖେଦେଣ ଧାଇଁ ଯେ
ଢମ ପସରା ସେନା କ୍ଷଣକେ ଯିବ
ଢମ ଗଳିବ କାଳେ କାଳେକ ଥିବ ଯେ । ୧୪ ।

ଅରୁଣ ତେଜ ରାମ ଅନନ୍ତ ମୂର୍ତ୍ତି
ଅଇଚ ବଳ ସିଦ୍ଧ ବିକ୍ରମ ଗଢ ଯେ
ଅଇଲେ ଭଲା ମୋତେ ନ ଥିଲେ ରାମ
ଅସି ଦେଖନ୍ତୁ ନିଜ ଏ ଲଙ୍କାସ୍ଥାନ ଯେ । ୧୫ ।

ତାଳୁରେ ଚୂଳ ରାମ ଛନ୍ଦେ ବାନ୍ଧେଣି
ଭୁଲ ଦେବାକୁ ନାହିଁ ଭୁବନ ତଳ ଯେ
ଭୁଲେ ନ ପାର ମାୟା କଲୁ ଦଇତ
ତରଣି ପ୍ରାୟେ ରାମ ମଣେ ଜଗତ ଯେ । ୧୬ ।

ଥିବେ ଯେବେ ଶ୍ରୀରାମ ଜୀବନେ ରହି
ଥଳ କରିବେ ସିନ୍ଧୁ ବନ୍ଧ ବନ୍ଧାଇ ଯେ
ଥିବେ ଯେମନ୍ତେ ଭଲେ ଲକ୍ଷ୍ମଣ ବୀର
ଥାନ ମରମ ଖୋଜି ବନ୍ଧିବେ ଶର ଯେ । ୧୭ ।

ଦଇବ ସଙ୍ଗତ ଯେବେ ହୋଇବ ସାହି
ଦେଖି ଦେଖି ତୁ କେଣେ ଯିବୁ ପଳାଇ ଯେ
ଦହିଣ ଲଙ୍କାଗଡ଼ ନେବେଟି ମୋତେ
ଦାଶରଥିର ବାଣ ଖାଇବ ତୋତେ ଯେ । ୧୮ ।

ଧିକ ତୋ ବୁଦ୍ଧି, ବଳ ଧିକ ତୋହର
ଧଇର୍ଯ୍ୟନାଥ ଭୁଲେ ହେଲୁ ବଇର ଯେ
ଧରମ ତୋତେ ଅଉ ସହିବ ନାହିଁ
ଧରଣୀଧରଙ୍କୁ ତୁ ଚହ୍ନିଲୁ ନାହିଁ ଯେ । ୧୯ ।

ନିର୍ମ୍ମଳ ନିରାକାର ପ୍ରଭୁ ଶ୍ରୀରାମ
ନାମ ଧଇଲେ ଯାଇ ନ ଦଣ୍ଡେ ଯମ ଯେ
ନ ଜାଣି ରାମଚନ୍ଦ୍ରେ ଯେମନ୍ତେ କଲେ
ନାରାଚଘାତେ ଖର ଦୂଷଣ ମଲେ । ୨୦ ।

ପାଇବେ ନିଷ୍ଟ ଭେଟ ପ୍ରଭୁ ଶ୍ରୀରାମ
ପ୍ରତେ ଏମନ୍ତେ ପ୍ରତିଯେ ନାହିଁ ମୋ ମନ ଯେ.

ପଡ଼ିଲି ବନ୍ଦୀ ଆସି ଅସୁର ଘରେ
ପାର କରଣ ଏଥୁ କେବେହେଁ ବାରେ । ୨୧ ।

ଫେଡ଼ି କାହାକୁ ହୃଦି କହିବ କଥା
ଫିଟାଇ କେହ୍ନୁ ମୋର ବାନ୍ଧବ ମଥା ଯେ
ଫାଟି ନ ଯାଇ ଜୀବ ଅଛି ଶରୀରେ
ଫଟୁ ଯେ ଥାଇ ମୋର ହୃଦ ଉଦରେ । ୨୨ ।

ବାବୁ ବିଧାତା ମୋତେ ଏହା ସେ କଲା ।
ବାଟେ ବସାଇ ମୋର ତୋଣ୍ଟ କାଟିଲା
ବୁଝି ତ ଆଉ ମୋତେ ଦଶଇ ନାହିଁ
ବନରେ ବୁଲୁଥିବେ ଦଗୋଷ୍ଠି ଭାଇ । ୨୩ ।

ଭଲା ବିଧାତା ମୋତେ ଏହା ସେ କଲା
ଭଗାରି ପ୍ରାୟେ ହୋଇ ବାଟେ ଲାଗିଲା ଯେ
ଭାଇ ଭାରଜା ଯେବେ ରାମ ଅଇଲେ
ଭଣେ ନନ୍ଦରଜ୍ଞ ଘୋରବନେ ରହିଲେ ଯେ । ୨୪ ।

ମନର ମନ ଜାଣି ହୃଦ ଭୂଷଣ
ମାଲ୍ୟବନ୍ତ ପର୍ବତେ ସାଜିଲେ ସୈନ୍ୟ ଯେ
ମିତ୍ରଙ୍କୁ ଚାହିଁ ରାମ ବୋଲନ୍ତି ବାଣୀ
ମନ ନ ରହେ ଯିବା ସାହେର ଛଣେ ଯେ । ୨୫ ।

ଯାଉ ପବନ-ସୁତ ଅଣୁ ବାରତା
ଯାହା କହିବ ଆମ୍ଭ ଜନକ-ସୁତା ଯେ
ଜୀବର ଜୀବ ମୋର ପ୍ରାଣର ଧନ
ଯାଉ ପବନ ସୁତ ଅଣୁ ବଦନ ଯେ । ୨୬ ।

ରାଘବ ତେଜେ ରାମ ସନ୍ଦେଶ ଘେନ
ରବ ଉଦଧ୍ୟେ ଗଲେ ସାଗର ଛଣି ଯେ
ରାବଣ ଲଙ୍କାଗଡ଼ ସବୁ ଖୋଜିଲେ
ରାମରାଣୀ ଅଶୋକ ବନେ ଭେଟିଲେ ଯେ । ୨୭ ।

ଲୁଳିତ ହୋଇ ହନୂ ଚରଣେ ପଡ଼ି
ଲଲଟେ କହେ ବେନି କରକୁ ଯୋଡ଼ି ଯେ
ଲକ୍ଷ୍ମଣ ରାମ ଦେଇଛନ୍ତି ବାରତା
ଲେଉଟି ଯିବ ସନ୍ଦେଶ ଦିଅ ସୀତା ଯେ । ୨୮ ।

ବିନତ ହୋଇ ହନୂ ସମ୍ମୁଖେ ଭଣି
ବେଗେ ମେଲାଣି ଦିଅ ଶ୍ରୀରାମ-ରାଣୀ ଯେ
ବେଗିଥଇଣ ମଣି ଦେଲେକ ସୀତା
ବୋଇଲେ ହନୂ ମୋର ଦେଖ ଅବସ୍ଥା ଯେ । ୨୯ ।

ଶ୍ରୀରାମ ମଣି ଘେନ ହନୂ ଗମିଲେ
ସରଣୀ ଲତା ମଧେ ବନେ ମିଳିଲେ ଯେ
ସୁସ୍ୱାଦୁ ଫଳ ମୂଳ ତୋଳି ଭକ୍ଷଇ
ଶୀଘ୍ରେ ମାଇଲେ ଲକ୍ଷେ ଅସୁରେ ଯାଇ ଯେ । ୩୦ ।

ଷୁର ଅସୁରେ ଯାଇ କଲେ ଅନୀତି
ଶାଙ୍କୋଳ ପଦେ ଘେନି ଗଲେ ମାରୁତି ଯେ
ଶ୍ରୀରାମ ସୁମରନ୍ତେ ବନ୍ଧନ ଫିଟି
ସୁବଳ ପରବତେ ବହିଲେ ରାତି ଯେ । ୩୧ ।

ସାତଘଡ଼ି ଭିତରେ ସାଗର ଗଲେ
ସାଙ୍ଗ ବୀରଙ୍କୁ ଯାଇ ଦର୍ଶନ କଲେ ଯେ

ଶୁଣିଣ ଅଠାର ହୋଇଲେ ମେଳ
ସନ୍ତୋଷେ ମଧୁବନ ଖାଇଲେ ଫଳ ଯେ ।୩୨।

ହସ ଶବଦ କର ଚଳିଣ ଗଲେ
ହରଷେ ରାମପାଦେ ଦର୍ଶନ କଲେ ଯେ
ହରଷ ହେଲେ ଦେଖି ସୁଗ୍ରୀ ରାଜନ
ହରଷେ ରାମପାଦେ କଲେ ଦର୍ଶନ ଯେ ।୩୩।

କ୍ଷଣେକେ ହନୁମନ୍ତ କହେ ବାରତା
କ୍ଷେମେଣ ବର୍ତ୍ତିଛନ୍ତି ଜନକସୁତା ଯେ
କ୍ଷିତି ଭ୍ରାନ୍ତି ନେଇ ବୁଝାଇ ନୀତ
କ୍ଷେମେଣ ମଙ୍ଗରାଜ ସେବେ ପଦୃର ଯେ ।୩୪।



# ରାମଚନ୍ଦ୍ର ଜଣାଣ ଚଉତିଶା

ଉପରର ଜଣାଣ ରାଜକବିଙ୍କ ଅର୍ଦ୍ଧନାମ ଚଉତିଶାର ଅନୁକରଣରେ ଲେଖା ହୋଇଅଛି । ଏହା ଏହି ଚଉତିଶା ନୁହେଁ କାହିଁକି ସ୍ୱରବର୍ଣ୍ଣ ଅନେକ ଜଣାଣ ଅର୍ଦ୍ଧନାମ-ଚଉତିଶା ଛନ୍ଦରେ ରଚନା ହୋଇଥିବାର ଦୃଷ୍ଟ ହୁଏ ।

କରପଦ୍ମ ଯୋଡ଼ିଣ   କହଇ ଦୀନଜନ

ହେ ପ୍ରଭୁ କୌଶଲ୍ୟା ନନ୍ଦନ !

କଷ୍ଟ ତ ଦେଖ ନେତ୍ରେ   କହ୍ନ କହ୍ମାଇ ମୋତେ

ତୁରତେ କୋଟେ ଅବଧାନ ହେ

ରାମଚନ୍ଦ୍ର !

କୃପା କି ନାହିଁ ଏବେ ଆଉ

କାଣା ଭୃତ୍ୟଙ୍କୁ ଏତେ ଦାଉ

କା'ଆଗେ ଅଉ ଦୁଃଖ   କହିବ ମୁଁ ନରେଶ

ଭରସା ତୁମ୍ଭେ ଥାଉ ଥାଉ । ୧ ।

ଖିତି ମଣ୍ଡଳେ କେହି   ମୋ ପରି ଜଣେ ନାହିଁ

ଏତେ କର୍ମହୀନ ପତିତ

ଯତି ମୁକୁଟ ମଣି   ଦାତାପଣ ମୁଁ ଜାଣି

ତୁମ୍ଭଙ୍କୁ କରଇ ଅଣତି ହେ

ରାମଚନ୍ଦ୍ର !

ଖଣ୍ଡନ କର ମୋର କ୍ଳେଶ

ଖିତିରେ ଖ୍ୟାତ ହେଉ ଯଶ

ଖଣେ ଯେବେ ଅନ୍ତର କରିବ ଧନୁର୍ଦ୍ଧର
ଖିପୁରେ ନାହିଁ ମୋତେ ବାସ ହେ । ୨ ।

ଗରିଷ୍ଠ କଷ୍ଟମାନ ଘଟରେ ସାବଧାନ
ନଷ୍ଟ କରନ୍ତୁ ପଣେ ବଲେ
ଗଣ୍ଡାକର ମହିମା ଥିଲା ପର ମଣିମା
ଜଣା ନ ଯାଏ ଏତେବେଳେ ହେ
ରାମଚନ୍ଦ୍ର !
ଗୁହାର ଯେବେ ନ ଶୁଣିବ
ଗୁପ୍ତ ମହିମା ନଷ୍ଟେ ହେବ
ଗରବ ଦବାନଳେ ଭୂମିରେ ଗୁଣ ଘୋଷି
ଚନ୍ଦ୍ରାରେ ପ୍ରାଣ ହରାଇବ ହେ । ୩ ।

ଘଟଣ ଚନ୍ଦ୍ର ମୁଖ ଦର୍ଶନ ମାତ୍ରେ ଦୁଃଖ
ଦୂରତ ଦୂର ହୋଇଅଛି
ଘୋର ଦୁଃଖ ବେଳକୁ ମୋହ ଉଣା କର୍ମକୁ
ସେ ଫଳ ନ ଘଟଇ କାହିଁ ହେ
ରାମଚନ୍ଦ୍ର!
ଘୋଟିଲା ଦଶା ବେଳୁ ବେଳ
ଦୁଃଖ କି ଯିବ ଅଉ କାଳ
ଘେନ ସେ ଯିବ କାୟା ଜୀବ ସହିତେ ଦୟା
ନକଲ ଦେଖି ମୋ ବିକଲ ହେ । ୪ ।

ଙ୍ଗିଓ ଜଗତକୁ କର ପ୍ରାଣୀ ମାନଙ୍କୁ
ଅକର୍ମେ କର୍ମ ଦେଇ ପାର

ଡ଼ିଣା ନୋହେ ଯା ଦଶା    ତୁମ୍ଭେ ଥାଉଁ ଭରସା
ଏହା ମୁଁ ମଣେ ଚମତ୍କାର ହେ
ରାମଚନ୍ଦ୍ର !

ଢ଼ପାପ୍ସ ନାହିଁକ ତୁମ୍ଭର
ଢ଼ଶା ବୁଦ୍ଧି ମୋଠାରେ କର
ଢ଼ଚଢ ନୋହେ ଅଉ    ଏ କଥା ମହାବାହୁ
ଦାସରେ ନିର୍ଦ୍ଦୟା ହେବାର ହେ । ୫ ।

ଚତୁର୍ଦ୍ଦଶ ପୁରରେ    ଶରଣ ଯେ ଯାହାରେ
ସେ ତାହା ବିପଦ ଖଣ୍ଡୁଛି
ଚନ୍ଦ୍ରକୂଟ ବିହାରୀ    ଏମନ୍ତେ ତୁମ୍ଭ ପଣ
କେ କାହା ଭୃତ୍ୟଙ୍କୁ ଦଣ୍ଡୁଛି ହେ
ରାମଚନ୍ଦ୍ର !

ଚତ୍ତେ ନ କଲ ଏ ଭାବନା
ଶୃକର ଠାରେ କି ବିମନା
ଚତୁର୍ବର୍ଗ ଦାୟକ    ବୋଲି ଏ ସୃଷ୍ଟି ଯାକ
ଡ଼ାକୁଛି ପରା ତୁମ୍ଭ ନାମ ହେ । ୬ ।

ଛପନ କୋଟି ଜୀବ—    ଜନ୍ତୁ ଯେତେକ ସବୁ
ପାଳନ କରୁଛ ଏହାଙ୍କୁ
ଛୋଟ କଥରେ ଯାହା    ଆପଣ ନୋହୁ ସାହା
ଛନ୍ଦା ପଡ଼ୁଛ ମୋ ବେଳକୁ ହେ
ରାମଚନ୍ଦ୍ର !

ଛଡ଼ି ଯିବନ୍ତି ଯଶ-ବାନା
ଛାମୁରେ କରୁଛୁ ପ୍ରାର୍ଥନା
ଛଳ ଘଡ଼ି ଚତୁରୁ   ହେ ବାଞ୍ଛା-କଳ୍ପତରୁ
ମୋର ଜଣାଣ କର ଧେନା ହେ । ୭ ।

ଜମ୍ବୁ ଜମ୍ବୁ ନିଶାଣ   ବାଜୁଛି ଯା' ନାମେଣ
ଅସୁର ବଳ ନାଶିବାରେ
ଯମ ରାଜନ କଷା   ଦଣ୍ଡରୁ ମୋତେ ରକ୍ଷା
ତୁମ୍ଭ ବିନା କେ କରି ପାରେ ହେ
ରାମଚନ୍ଦ୍ର !
ଜଳ ବନ୍ଧନେ ଯେସନେ ମୀନ
ଯେସନେଁ ଚାତକର ଘନ
ଯଥାର୍ଥ ସେହିପରି   ତୁମ୍ଭଙ୍କ ଅନୁସରି
ରହିଛି ମୋହର ଜୀବନ ହେ । ୮ ।

ଝଙ୍କାରେ ଅରତ   ହୋଇ ଗୁହ୍ମୁଁ ଗୁହ୍ମୁଁ ଭ
ବୁଡ଼ୁଛି ଶୋକ-ଜଳେ ଭେଳା
ଝଟଉ ମୋ ଗୁହାରି   ଶୁଣି କୋଦଣ୍ଡଧାରୀ !
ଦଣ୍ଡେ ନ କର ଆଉ ହେଳା ହେ
ରାମଚନ୍ଦ୍ର !
ଝଳ ଯାଉ ମୋ ବାଞ୍ଛା ଫଳ
ଝାଙ୍କି ନେବେନ୍ତି ଶତ୍ରୁ ଦଳ
ଝୀନ ପ୍ରମାଣେ ପୁଣି   ନରେଶଙ୍କୁ ଶରଣ
ରକ୍ଷଣେ ହେବ କାହିଁ ବଳ ହେ । ୯ ।

ନିୟମ କରିଛ ପରା ତୁମ୍ଭେ କୋଦଣ୍ଡଧର
ହେବ ବୋଲି ଭକ୍ତଙ୍କୁ ସାହା
ନୋହେ ତ ଏହା ମିଛ ଶ୍ରୀମୁଖରେ କହିଛ
ଏବେ କପାଁ ଲଙ୍ଘୁଛ ତାହା ହେ
ରାମଚନ୍ଦ୍ର !

ନିଜେ ନିୟମ ଲଙ୍ଘୁଛ ଯେବେ
ନିନ୍ଦା ନୋହିବ କହ ତେବେ
ନିଶାମଣି, ସାଗର, ବାସୁକି, ସ୍ଥାବର
ଏ କପାଁ ସତ୍ୟ ନ ଲଙ୍ଘିବେ ହେ । ୧୦ ।

ନିଲେ ଯାହାଙ୍କ ଭାଷ ତାହାଙ୍କ କି ବିଶ୍ୱାସ
କରଣ ମନ୍ତ୍ର ପଢ଼ିତେ
ନିଜେ ଏ ଆହାଯଷ ନୋହିବାରୁ ପ୍ରତ୍ୟକ୍ଷ
ଦେଖି ମୁଁ ବସିରହି ଚକ୍ରେ ହେ
ରାମଚନ୍ଦ୍ର !

ଠେକି କହିଛି ଶାସ୍ତ୍ରେ ଯେତେ
ଠାଣୁଅ ବୋଲି ଏ ଜଗତେ
ଠାଣ ମହିମା ଅଛି ସାକ୍ଷାତ ନୟନରେ
ନ ଦେଖିଲେ କେ ଯିବ ପ୍ରତେ ହେ । ୧୧ ।

ଠକପଣ ନ କର ମୋ ଠାରେ ପୀତାବର
ନାହିଁଟି ମୋର ଅନ୍ୟ ଗତି
ଠାବ ଦେଇ ମୋ ଜୀବ ରଖ ଦୀନବାନ୍ଧବ
ଯାଉଚି ଗଡ଼ି ଏ ଖରତି ହେ
ରାମଚନ୍ଦ୍ର !

ଠସ ନ ମଣ ଏହୁ ଅର୍ଥ
ଠୂଲେ ଏ ମୁଦ୍ଧଙ୍କ ସ୍ୱାର୍ଥ
ଠିକେ ଭୌବନ ଭଣେ ତୁମ୍ଭ ବିନା କେ ଜଣେ
ମୋ ଦୁଃଖ ନେବାକୁ ସାମର୍ଥ ହେ । ୧୨ ।

ଭର ମୁଁ ପ୍ରମାଦକୁ ତୁମ୍ଭ ପଦ୍ମପାଦକୁ
ଆଗହୁଁ ଥିଲି ଅନୁସରି
ଭାବ ଭାବ ପଥର ହୋଇ ଏବେ ଏଥର
ତୁମ୍ଭ ବନ୍ଧନେ ଗଲି ସରି ହେ
ରାମଚନ୍ଦ୍ର !
ତେଉ କର୍ଣ୍ଣି ନ ଶୁଣ ବାରେ
ଡାକିଲେ ଯେତେ ବାରୁବାରେ
ଡାଳ ପତ୍ରେ ଚଢ଼ାଇ କୋପେ ଖଣ୍ଡ ଉଠାଇ
ଉହ୍ମଳ ମୂଳ ଛେଦବାରେ ହେ । ୧୩ ।

ଉମ କହେ ମୁଁ ଯେତେ ଏକା ତୁମ୍ଭ ନାମକେ
ସକଳ କଲି ଅକାରଣ
ଡ଼ିକଟୁ ଆସି ମୋତେ ଦୁଃଖ ସନ୍ତାପ ଯେତେ
ତାହା ନ କଲ ନିବାରଣ ହେ
ରାମଚନ୍ଦ୍ର !
ଉଲ ପଡ଼ିଛୁ ଧନାନଳେ
ଗାଲେ ତହିଁ ସର୍ବାଙ୍ଗ ଜଳେ
ଢାଳ କରୁଣା-ଜଳ ଏ କଷଣରୁ କାଳ
ଜୀବକୁ ଯେମନ୍ତ ଯାଉ ବଳେ ହେ । ୧୪ ।

ଅଣଅଯତ୍ନ ହୋଇ ଅଛୁ ତୁମ୍ଭଙ୍କୁ ଧ୍ୟାୟି
ସଦୟେ ହର ମୋ ଦୁର୍ଦ୍ଦଶା
ଅଣାଶ୍ରୟ ପ୍ରାଣୀଙ୍କ ମନ ପାଞ୍ଚି ଏଣିକି
ନ କର ଆଉ ଲୋକହସା ହେ
ରାମଚନ୍ଦ୍ର !
ଅଣହେଳା ତୁମ୍ଭର ଦେଖି
ଏଣେ ମୋ ଆତ୍ମା ଯାଏ ଶୁଖି
ଅଣମାନେ ସଦୟା ନ କଲ ଏବେ ମାୟା
କର କି କଷା ମନେ ରଖି ହେ । ୧୫ ।

ତକାଇ ରହୁଅଛୁ ତୁମ୍ଭଙ୍କୁ ରଘୁବନ୍ଧୁ !
ସଙ୍କଟୁ ପାର ହେବା ପାଇଁ
ତତ୍‌କାଳେ ଦୁଃଖ ମୋତେ ଉଦ୍ଧାରିବାରେ ଏବେ
ଉଚ୍ଛୁର କରୁଛ କିପାଇଁ ହେ
ରାମଚନ୍ଦ୍ର !
ତାରିଛି କେତେ ପତିତଙ୍କୁ
ଛୁଟାଇ ଦିଅ ଏ ଘାତକୁ
ଢେଙ୍କଣୀ ମନ୍ତ୍ର ଘାଟ ପ୍ରସନ୍ନ ହୋଇ ବେଗ
କି ରୂପେ ନାଶ ମୋ ଆର୍ତ୍ତିକୁ ହେ । ୧୬ ।

ଥୟ ଆଉ ଏ ଚିତ୍ତ ନୁହଇ କଦାଚିତ
ଅଥୟ ହୋଏ ଭବଦ୍ୱାରୁ
ଥଳକୂଳ ନ ମିଳେ ଭାସୁଛି ଚିନ୍ତାଜଳେ
ଏକା ତୁମ୍ଭର ନିର୍ଦ୍ଦୟାରୁ ହେ
ରାମଚନ୍ଦ୍ର !

ଥଳ ମୋ ପାଇଁ ଯେବେ ଥାନ୍ତା
ଥରେ ସୁଦୟା ହୋଇଥାନ୍ତା
ଥାଇ ଏ ଦେହଗଡେ ଜୀବ ଏପରି ଏତେ
କଷ୍ଟ କିପାଇଁ ସହୁଥାନ୍ତା ହେ । ୧୭ ।

ଦୟା ନ ଗଲା ମନୁ ଦଶା ଗ୍ରାହିବା ଦନୁ
ବିନାଶ ନକର ମୋ ବାଧା
ଦାସ ଜନର ଜୀବ ଛାଡ଼ି ଗଲେ କି ହେବ
ପଶ୍ଚାତେ ଦେବେ ଯେତେ ସୁଧା ହେ
ରାମଚନ୍ଦ୍ର !

ଦାତାପଣ ତ ଜଣାଯିବ
ଦାମ୍ଭିକ ସ୍ୱାର୍ଥେ ନାଶିବ
ଦାସରେ ହେଲେ ବାମ ଦାସବତ୍ସଳ ନାମ
ବୋଲିଣ କାହିଁ ପ୍ରକାଶିବ ହେ । ୧୮ ।

ଧରାଇ ଶସ୍ତ୍ର ହସ୍ତେ କପଟ କରି ଏତେ
ଦେଉଛ ସଙ୍ଗେ ଯେଉଁ ସନ୍ଧା
ଧମକ ଦଣ୍ଡ ଯାହା ସେ ଶତ୍ରୁଙ୍କର ତାହା
ଦେହ ଥରଇ ମୋ ମହାହେ
ରାମଚନ୍ଦ୍ର !

ଧର୍ମ କଥା ନୁହଇ ଏତ
ଧରିଛ ତୁମ୍ଭେ ଯେଉଁ ମତ
ଧରଣୀରେ ଏପରି ଭୃତ୍ୟମାନଙ୍କୁ କରି
ଯଶ କି କରିଛ ବିଖ୍ୟାତ ହେ । ୧୯ ।

ନ ଘେନ ଚତ୍ତ୍ରେ ଛଳ      ଯେ ଯାହା ବାଞ୍ଛା ଫଳ
ଦେଇ ତ ଉଦ୍ଧାରୁଛ ଜଗା
ନାଥ ଯାଉଛୁ ହୋଇ      କିଛୁ ଆଜ୍ଞା ନ ଦେଇ
ଦେଉଛ କିଂପା ମୋତେ ଦଗା ହେ
ରାମଚନ୍ଦ୍ର !
ନରେଖ ଡାକିଲେ ନ ଶୁଣ
ନଷ୍ଟୁର ହୃଦୟ କରଣ
ନଥିଲା ଜଣାମୋତେ      ତୁମ୍ଭଠାରେ ଏମନ୍ତେ
ଅଛି ବୋଲି ତ ଏବେ ଗୁଣ ହେ । ୨୦ ।

ପକାଇ ବନ୍ଧନରେ      ଏବେ ଶାସ୍ତି ଦେବାରେ
ତେବେ ତ ଦୟାକୁ ନ ବହ
ପୀଡ଼ା ପ୍ରତାପ ଛାର      ଘାତ ସହି ନ ପାର
ହଉଛି ବଡ଼ ଅନ୍ତର୍ଦାହ ହେ
ରାମଚନ୍ଦ୍ର !
ପାଉଛି ପର୍ଶୁ ପରାଭବ
ପ୍ରାଣ ଯିବାର ଭଲ ହେବ
ପାଶ୍ୱକର ଏମନ୍ତେ      ପ୍ରଭୁ ! ଯଶ ପଢ଼ତେ
ମୋରେ କି ପ୍ରଶଂସା ପାଇବ ହେ । ୨୧ ।

ଫନା ଭୁମ୍ଭକୁ କର      ହେ ଦେବ ରଘୁପଧାତ !
ମୋ ବାଞ୍ଛାଫଳ ନ ଫଳୁଛି
ଫାଟିଲା କି କପାଳ      ନ ଫଳେ ବାଞ୍ଛାଫଳ
ଏହା ମୁଁ ସବଦା ଭାବୁଛି ହେ
ରାମଚନ୍ଦ୍ର !

ଯିକର ଛନ୍ତୁ ଦଶୁ ନାହିଁ
ଯେଡ଼ ଯଶସ୍ୱୀ ଭାବଗ୍ରାହୀ !
ଚିଙ୍କୁ ଜାଣି ଜାଣି     ଶ୍ରୀଚରଣ ଶରଣ
ଏବେ ମୁଁ ଯିବି ଆଉ କାହିଁ ହେ । ୨୨ ।

ବଳବନ୍ତ ଠାକୁର     ବୋଲି ତୁମ୍ଭ ପଦ୍ମର
ତଳେ ମୁଁ ପଶିଲି ଶରଣ
ବିପଦରୁ ନକର—     ପାରିଲେ ମୋତେ ପାର
ବୃଥା ହେବନ୍ତି ଗୀତପଣ ହେ
ରାମଚନ୍ଦ୍ର !
ବହୁତ ବିଳମ୍ବ ନ କର
ବେଗେ ପ୍ରସନ୍ନେ ଦିଅ ବର
ବିନୟରେ କହୁଛି     ଆପଣା ମୋନେ ଛନ୍ତୁ
ନକର ଆଉ ନାରଖାର ରେ । ୨୩ ।

ଭଣ୍ଡାରେ ଯାହାଙ୍କର     ରତ୍ନାଦି ଭରିଭର
ସମ୍ପତ୍ତି ପୂର୍ଣ୍ଣ ହୋଇଥାଇ
ଭାବନା ଚନ୍ଦ୍ରେ କର     ସେ ମହାପ୍ରଭୁଙ୍କର
ଭୃତ୍ୟଙ୍କ ଦରିଦ୍ର ହୁଅଇ ହେ
ରାମଚନ୍ଦ୍ର !
ଭାବନା ଯନ୍ତୁଁ ନ ଫଳୁଛି
ଜୀବନ ଚଳାରେ ଟଳୁଛି ।
ଦାସୀ ଦୁଃଖ ହେବାରୁ     ଦାଂଗାସଙ୍କ ଭଙ୍ଗୀରୁ
ଲଜ୍ଜା ତ ମରଣୁ ବଳୁଛି ହେ । ୨୪ ।

ମଙ୍ଗଳ ଦାୟକ ତ    ମୋ ମଙ୍ଗଳ ବାଞ୍ଛିତ
ବେଳକୁ ହୁଅ ଏଡ଼େ ବାମ
ମର୍ତ୍ତ୍ୟପୁରେ ଅପଣ    କେମନ୍ତେ ଦୀନଜନ
ତାରଣ ଖ୍ୟାତ କଲ ନାମ ହେ
ରାମଚନ୍ଦ୍ର !
ମହିମା ନ ଦଶଇ କିଛୁ
ମାତ ଦୁର୍ଦ୍ଦଶା ଅହାବଢୁ
ମହାପ୍ରଭୁ ବୋଲଣ    ଦେହ ସହିତେ ପ୍ରାଣ
ତୁମ୍ଭକୁ ପ୍ରଭୁ ମୁଁ ବିକଛି ହେ । ୨୫ ।

ଜଗତେ ଯେତେ ଯଶ    କରିଅଛ ପ୍ରକାଶ
ସେ ଯେବେ ସତ୍ୟ ହୋଇଥାନ୍ତା
ଯେତେକ ତାରିଲଣି    ମୁଁ ନିଃଶ୍ରୟ ପ୍ରାଣୀ
ମୋହୋର ଏ କ୍ଲେଶ କି ଥାନ୍ତା ହେ
ରମଚନ୍ଦ୍ର !
ଜୀବ ଉଦ୍ଧାର ଲାଗି ଏକା
ଜାଣି ତ ନ ଶୁଣ ମୋ ଡକା
ଜନକସୁତା-ସାଇଁ    ମିଛେ ଉଡ଼ା କପାଇଁ
ପତିତପାବନ ପତାକା ହେ । ୨୬ ।

ଚଞ୍ଚଳ ଅପମତି    ନ ଶୁଣିଣ ଗୁହାର
ଦେଖିବାରୁ ମୋ କର୍ମ ଉଣା
ରାଜ୍ୟେ ତୁମ ଚକର    କହଣ ପାଇବାର
ଏହା ତ ଶାସ୍ତ୍ରେ ନାହିଁ ଶୁଣା ହେ
ରାମଚନ୍ଦ୍ର !

ରାଜ୍ୟ କଠିଣ ବୁଝାମଣି
ରଖିଛୁ ଯଶ ଅକଳଣି
ରାବଣାରି କିପାଇଁ          ଏତେ କଷଣ ଦେଉ
ନ କର ମୋରେ ସୁକରୁଣା ହେ । ୧୭

ଲଲାଟ ଲେଖା ଯେତେ          ଭଲମନ ସହିତେ
ସକଳ ଜାଣି ଅପେ ଲେଖ
ଲଗାଇ ଏତେ ଲୀଳା          ଯେ ଯାହା ଭୋଗ କଲା
ସାକ୍ଷୀଙ୍କ ପ୍ରାୟେ ସବୁ ଦେଖ ହେ
ରାମଚନ୍ଦ୍ର !
ଲେଖିଛ ଲଲାଟରେ ଯାହା
ଲଭାଇ ପାର ତୁମ୍ଭେ ତାହା
ଲକ୍ଷ୍ୟ ତୁମ୍ଭଙ୍କ କେହ୍ନ          ଅଛୁ ସଂସାରେ ଆଉ
ଶପଥ ବେଳେ ହେବ ସାହା ହେ । ୧୮ ।

ବଢ଼େ ବିପତ୍ତି-ନଦୀ          ବେଳକୁ ବେଳ ବୃଦ୍ଧି
କୃପା ନ କର କୃପାନିଧି
ବର ଯେମନ୍ତେ ପୂର୍ବେ          ଦେଉଥିଲ ଯା ଏବେ
ବୁଡ଼ାଇଲଣି କି ସେ ସିଦ୍ଧି ହେ
ରଘୁନନ୍ଦ !
ବାନା ତ ଅଛୁ କି ନ ଅଛୁ
ବାରଣ ଯାଉନାହିଁ ଭଛୁ
ବାଞ୍ଛାନିଧି ଉଦ୍ଧାର          କର ଅବା ନ କର
ତୁମ୍ଭଙ୍କ ଆଶା ତ କରଛୁ ହେ । ୧୯ ।

ଶତମ୍ମାନ ପ୍ରଦାତ ଦୁଷ୍ଟଗଣ ସଂହାର
ପାଳନ୍ତି କେତେ ସନ୍ଥଜନ
ସର୍ବଦା ତେଣୁ କର ସନ୍ଥଜନେ ତୁମ୍ଭର
ନାମକୁ କରନ୍ତି ଭଜନ ହେ
ରାମଚନ୍ଦ୍ର !
ଯେ ଯେତେ ଦୁଷ୍ଟମାନେ ଥାନ୍ତି
ସେ ସେ ତୁମ୍ଭଙ୍କୁ ନ ଭଜନ୍ତି
ଶାସ୍ତ୍ରେ ତ ଶୁଣୁଅଛୁ ଦୋଷଗୁଣ ନ ବାଛୁ
ତାହାଙ୍କୁ ଦେଉଛ ମୁକତି ହେ । ୩୦ ।

ଯଜା ନାନା ପ୍ରକାର ହୋଇବା ହେତୁ ମୋର
ଶତ୍ରୁବାଦକ ମହାତପ୍ତ
ମାନ୍ୟା ତୁମ୍ଭେ କଷ୍ଟରେ ନୋହିବାରୁ ତ ମୋତେ
ନ ଦିଶେ ବଞ୍ଚିବା ଉପାୟ ହେ
ରାମଚନ୍ଦ୍ର !
ଶତ୍ରୁ ଏ ନେଲେଣି ମୋ ପ୍ରାଣ
ସର୍ବେ କରନ୍ତି ବଡ଼ ଟାଣ
ସେ ହେବା ପାଇଁ ସାରୀ ଭୃତ୍ୟଙ୍କ ଛଳେ ପରି
ଧରନ୍ତି କରେ ଧନୁର୍ବାଣ ହେ । ୩୧ ।

ସ୍ୱୟଂ ପରମବ୍ରହ୍ମ କ୍ଷଣେ ଯେ ହେଲେ ବାମ
ସୃଷ୍ଟିକି ସଂହାର ପାରନ୍ତି
ସେ ପ୍ରଭୁଙ୍କ ଦାସଙ୍କୁ ବଳେ ଆସି ପାଶଙ୍କୁ
ଜଗସ୍ତ ଲୋକେ କି ମାରନ୍ତି ହେ
ରାମଚନ୍ଦ୍ର !

ସ୍ୱହସ୍ତରେ ଥାଏ କୋଦଣ୍ଡ
ସ୍ୱଦାସ ପାଉଥାଏ ଦଣ୍ଡ
ସେହି କୋଦଣ୍ଡରେଣ ନାଶ ପରି ରାବଣ—
ବିଶାଦ ପାଇଁ ନାନା ଦଣ୍ଡ ହେ । ୩୨ ।

ହଜି ଗଲାଣି ଜ୍ଞାନ ହେଲିଣି ମୁଁ ଅଜ୍ଞାନ
ତୁମ୍ଭେ ତ ହେବାରୁ ବିପକ୍ଷ
ହାରି ରହିଲେ ହର ମୋ ଶତ୍ରୁଙ୍କୁ ନ ପାରି
ଆଉ କେ ହେବ ମୋ ସୁପକ୍ଷ ହେ
ରାମଚନ୍ଦ୍ର !

ହାତେ ଏ ଶତ୍ରୁ ଗରିଷ୍ଠଙ୍କୁ
ହରି ନ ନେଲେ ମୋ କଷ୍ଟଙ୍କୁ
ହସିବନ୍ତ ବସି ରାଜ୍ୟେ ଅଯୋଧ୍ୟା ବାସୀ
ହାରିଲି ବୋଲିଣ ଦୁଷ୍ଟଙ୍କୁ ହେ । ୩୩ ।

କ୍ଷମା କର ମୋ ଦୋଷ ଛାଡ଼ ସକଳ ରୋଷ
ଦିଅ ସୁଜ୍ଞାନ ଉପଦେଶ
କ୍ଷୟେ ଯାଉ ମୋ ପାପ ସର୍ବ ଶୋକ ସନ୍ତାପ
ବିଶାଦ ଯେତେ ନାନା କ୍ଲେଶ ହେ
ରାମଚନ୍ଦ୍ର !

କ୍ଷତ ହୋଇଲେ ଏ ପ୍ରତିଜ୍ଞା
କ୍ଷମ କେ କରିବ ଅବଜ୍ଞା
କ୍ଷମାନାଥ ଏତିକି ଅଜ୍ଞାନ ସେବକଙ୍କ
ସୁପ୍ରସନ୍ନରେ ହେଉ ଆଜ୍ଞା ହେ । ୩୪ ।

---

# ବଉଳ ଚଉତିଶା

---

ଦୀନକୃଷ୍ଣଙ୍କ ବଉଳ ଚଉତିଶା ଓ ଏ ବଉଳ ଚଉତିଶା ଏକ-ଭାବ-ଦ୍ୟୋତକ । ଦୁହିଙ୍କ ଛନ୍ଦ ମଧ୍ୟରେ ସାମଞ୍ଜସ୍ୟ ବର୍ତ୍ତମାନ । ସେହି ଛନ୍ଦସବୁ ଉତ୍କଳୀୟ ପ୍ରାଣରେ ସହଜ ସଂଭ୍ରମ ପ୍ରଦାନ କରେ । ବଉଳ ଚଉତିଶା ଛନ୍ଦ ଜନ୍ମିଥିବ ବୋଧହୁଏ ।

କହିଲି କଥା ଏ ଦୂତି ! ଶୁଣ ମୋ ବଚନ
କଦମ୍ବ ମୂଳରେ ଗୋ
ବଉଳ !
କମଳ ଲୋଚନ ଗୋ
ବଉଳ ! । ୧ ।

ଖଣ୍ଡେ ଦୂରୁ ଦେଖିଲି ମୁଁ ତାହାର ବେଶକୁ
ଖଞ୍ଜିଛି କଟାକ୍ଷ ବାଣ ଗୋ
ବଉଳ !
ମରମ ସ୍ଥାନକୁ ଗୋ
ବଉଳ ! । ୨ ।

ଗିଆନ ହରାଇଣ ସଖି! ହୋଇଲି ମୁଁ ବାଇ
ଗୋବିନ୍ଦଙ୍କ ବେଶ ଦେଖି ଗୋ
ବଉଳ !
କେ ଧରିବ ଦେହ ଗୋ
ବଉଳ ! । ୩ ।

ଘଡ଼ିଏ ମନରୁ ମୋର ନ ଯାଉ ତା କଥା
ଘରବର ଉପେକ୍ଷା କଲି ଗୋ
ବଉଳ !
ଏକା କୃଷ୍ଣ ଚିନ୍ତା ଗୋ
ବଉଳ । ୪ ।

ନାହିଁ ନ କରଣ ଦୂତି ! ବେଗ ହୋଇ ଯାଅ
କଷ୍ଟେ ଯେବେ ନ ଆସିବେ ଗୋ
ବଉଳ !
ହରିଲବ ଦେହ ଗୋ
ବଉଳ ! । ୫ ।

ଚିତ୍ତ ମୋର ଛନ ଛନା ହୁଅ ଦକ ଦକ
ଚିତ୍ତରୁ କ୍ଷଣେ ନ ଯାଇ ଗୋ
ବଉଳ !
ଚନ୍ଦନ ତିଳକ
ବଉଳ ! । ୬ ।

ଛନ୍ଦଛନ୍ଦ ବେନି ଚରଣ ଶ୍ରୀକରେ ବଇଁଶୀ
ଛଇଲ ନଟ-ନାଗର ଗୋ
ବଉଳ ।
ନୂପୁର ମୃରୁଛ ଗୋ
ବଉଳ ! । ୭ ।

ଜାଣିଲି ଅଧ ଗରିଷ୍ଠ ମଲ ମହାମଲ
ଜାତିକୁଳ ଉପେକ୍ଷା କଲି ଗୋ
ବଉଳ !

ଯାହା ବୋଲି ବୋଲ ଗୋ

ବଉଳ ! । ୮ ।

ଝିମଣ୍ଟେ ମନରୁ ନ ଯାଇ ତାର କଥା

ଝସକେତୁ ବାଣ ବାଜିଲେ ଗୋ

ବଉଳ !

ଶ୍ରୀଅଙ୍ଗ କଲା ବ୍ୟଥା ଗୋ

ବଉଳ ! । ୯ ।

ନ ରୁଚଇ ଅନ୍ନ ପାଣି ଗରୁ କେଶବାସ

ନନ୍ଦସୁତ ସଙ୍ଗେ ଥିବା ଗୋ

ବଉଳ !

ରଜନୀ ଦିବସ ଗୋ

ବଉଳ ! । ୧୦ ।

ଟାହି ପରିହାସ ଆମ୍ଭେ କାହାକୁ କରିବା

ଟଙ୍କଧର ଅଗ୍ରଜଙ୍କ ଗୋ

ବଉଳ !

ତପାଇଁ ଝୁରିବା ଗୋ

ବଉଳ ! । ୧୧ ।

ଠାକୁରଙ୍କ ପଦ୍ମପାଦେ ଥିବା ଅନ୍ତନଷ୍ଠ

ଠାଠିକେ ଶରଣ ଗଲା ଗୋ

ବଉଳ !

ଠକ ବଂଶୀ ଦାସ ଗୋ

ବଉଳ ! । ୧୨ ।

ଡରଥାଉ ବୋଲୁ କେହ୍ନୁ ଗଲେ ବୃନ୍ଦାବନ
ଢେରଥାଉ ଶ୍ରବଣ ଗୋ
ବଉଳ !
ଶୁଣି ବେଣୁସ୍ୱନ ଗୋ
ବଉଳ ! । ୧୩ ।

ଢଳ ଢଳ ଆସୁଥାନ୍ତି ବତ୍ସବୃନ୍ଦ ଧେନୁ
ଢଳବେ ତାହାଙ୍କୁ ଦେଖି ଗୋ
ବଉଳ !
ସୁର ନର ମୁନି ଗୋ
ବଉଳ ! । ୧୪ ।

ଅଖିଳ କୋଟି ବ୍ରହ୍ମାଣ୍ଡ ଅଧିପତି ହୋଇ
ଆମ୍ଭଙ୍କୁ ଅନାସ୍ତ କର ଗୋ
ବଉଳ !
ଗଲେ କାହିଁ ପାଇଁ ଗୋ
ବଉଳ ! । ୧୫ ।

ତନୁ ତାଙ୍କ କୋମଳ ମଧୁର ତାଙ୍କ ବାଣୀ
ତରସ୍ତ ହୋଇଲୁ ଶୁଣି ଗୋ
ବଉଳ !
ଗୋପର ତରୁଣୀ ଗୋ
ବଉଳ ! । ୧୬ ।

ଥବର ନୋହଇ ଚିତ୍ତ ଥଏ ନ ଜାଣିଲେ
ଥନ ପାନେ ପୂତନାକୁ ଗୋ

ବଉଲ !
କହ୍ନାର ମାଇଲେ ଗୋ
ବଉଲ ! । ୧୭ ।

ଦଇନ କରଣ ଦୂତ ! ଜନ୍ତୁଅଛୁ ତୋତେ
ଦାଦୁଛୁ କନ୍ଦର୍ପ-ବାଣ ଗୋ
ବଉଲ !
ଦମ୍ଭାକର ମୋତେ ଗୋ
ବଉଲ ! । ୧୮ ।

ଧୀରେ ଅସ୍ତଥାନ୍ତୁ ଧୂସର ଦଶଇ ତନୁ
ବଣ୍ଟ ବୃନ୍ଦମେଲେ ଗୋ
ବଉଲ !
ଉଡ଼ ପଡ଼ ବେଣୁ ଗୋ
ବଉଲ ! । ୧୯ ।

ନୋହିଲେ କ ବୋଷ୍ଟଚନ୍ଦ୍ର ଚରଣକୁ ଶୋଭି
ନୀଳେନ୍ଦ୍ର ଲୋଚନେ ଗୋ
ବଉଲ !
କ ଉପମା ଦେବା ଗୋ
ବଉଲ ! । ୨୦ ।

ପରତେ ନ ଯାଇ ଅମ୍ଭେ ତାହାଙ୍କ କଥାକୁ
ବୃନ୍ଦାବନରେ ଯାହା ଗୋ
ବଉଲ !
ବୋଲନ୍ତି ଅମ୍ଭଙ୍କୁ ଗୋ
ବଉଲ ! । ୨୧ ।

ଯାଉ ଯାଉଅଛ ହୃଦ ତାଙ୍କ ଗୁଣ ଗୁଣି
ଫୁଲଣା ହୋଇଲୁ ଗୋ
ବଉଳ !
ବରଜ ତରୁଣୀ ଗୋ
ବଉଳ ! । ୨୨ ।

ବଦନ ହୋଇଣ ଦୂତି ! ବେଗ ହୋଇ ଯାଅ
ବୃନ୍ଦାବନଚନ୍ଦ୍ର ଲାଗି ଗୋ
ବଉଳ !
ହସାଇବୁଁ ଦେହ ଗୋ ।
ବଉଳ ! । ୨୩ ।

ଭବ ଭବ ମୁନି ଯାର ନ ପାଇଲେ ଲେଖ
ଭାବକୁ ଶରଣ ଗଲା ଗୋ
ବଉଳ !
ବଂଶୀଧର ଦାସ ଗୋ
ବଉଳ ! । ୨୪ ।

ମଥୁରାକୁ ଗଲା ଦିନୁ ମନେ ସୁଖ ନାହିଁ
ମଉବୁ ସକଳ ଗୋପ ଗୋ
ବଉଳ !
ତା ମୁଖ ନ ଚାହିଁ ଗୋ
ବଉଳ ! । ୨୫ ।

ଯୋଗୀଜନମାନେ ଯାର ନ ପାଇଲେ ମାୟା
ଜଗଦ୍‌ବନ୍ଦନ ଜାଣିଲୁ ଗୋ

ବଉଳ !
ନଷ୍ଟୁର ତା ହୁଅ ଗୋ
ବଉଳ ! । ୨୬ ।
ରଙ୍ଗିମା ଅଧରେ ପ୍ରଭୁ ମନ୍ଦ ମନ୍ଦ ହସି
ରଚିଲୁ ସକଳ ଗୋଇ ଗୋ
ବଉଳ !
ଶୁଣି ତାଙ୍କ ବଂଶୀ ଗୋ
ବଉଳ ! । ୨୭ ।
ଲାବଣ୍ୟ ନଧିକ ଅଉ ପାଇବା ଯେ କାହିଁ
ଲୋଚନେ ଦେଖିବା ଯାଏ ଗୋ
ବଉଳ !
ମନେ ପ୍ରତେ ନାହିଁ ଗୋ
ବଉଳ ! । ୨୮ ।
ବିଧାତା କଲା କର୍ମକୁ କେ କରିବ ଆନ
ବନମାଳୀ ଗଲା ଦିନୁ ଗୋ
ବଉଳ !
ନ ସରଇ ଦିନ ଗୋ
ବଉଳ ! । ୨୯ ।
ଶ୍ରୀକୃଷ୍ଣ ମଥୁରା ଗଲେ ନ ସରଇ ଦିନ
ଶରୀରକୁ ଗରୁ ହେଲା ଗୋ
ବଉଳ !
ପିନ୍ଧିଲା ବସନ ଗୋ
ବଉଳ ! । ୩୦ ।

ସୁମୁଖୀ ବଚନ ଶୁଣି ହରଷ ବଦନ
ସଚେ ଯେବେ ନ ଆସିବେ ଗୋ
ବଉଳ !
ଯିବା ସନ୍ନିଧାନ ତୋ
ବଉଳ ! । ୩୧ ।

ସରୋଜଲୋଚନୀ ମାନେ ହୋଇବୁ କୁଣାଳ
ସମସ୍ତ ବେଦନା ହରିବେ ଗୋ
ବଉଳ !
ଯଶୋଦାଙ୍କ ବାଳ ଗୋ
ବଉଳ ! । ୩୨ ।

ହରଷ ହୋଇଣ ସେ ହରିଙ୍କି ଲାଗୁଥାଅ
ହରିବେ ସକଳ ଦୁଖଗୋ
ବଉଳ !
ସଂଶୟ ନ ପାଅ ଗୋ
ବଉଳ ! । ୩୩ ।

ଯେଉଁ ବରଙ୍କ ପଦ୍ମପାଦେ ଅନ୍ତ ମନ ଦେଇ
ଝୁର ବଂଶୀଧର ଦାସ ଗୋ
ବଉଳ !
ସେ ପାଦକୁ ଧ୍ୟାୟି ଗୋ
ବଉଳ ! । ୩୪ ।

---

# ପୂର୍ବରାଗ ଚଉତିଶା

ଏହି ଚତୁସ୍ତ୍ରିଂଶଅକ୍ଷରମୂଳକ ଗୀତଟି ପୂର୍ବରାଗବର୍ଣ୍ଣନ ଉପଗୀତରେ ବର୍ଣ୍ଣିତ ହୋଇଥିବାରୁ ପୂର୍ବରାଗ ଚଉତିଶା ବୋଲି କହନ୍ତି । ଏବଂବିଧ ରଚନାରୂପବର୍ଣ୍ଣିତ ବିରହ ଚଉତିଶା ମଧ୍ୟ ମିଳିଅଛି । ଚଉତିଶା ପୁରୁଣା ଓଡ଼ିଆ କବିମାନଙ୍କର ଖୁବ ଆଦରର ଗୋଟିଏ ପ୍ରିୟ ସରଣୀ ଥିଲା ଓ ଏଥିରେ ସେମାନେ ନାନା ଚତୁରୀ ଦେଖାଉଥିଲେ । ସେଥିପାଇଁ ଗୀତରୁ ଓଡ଼ିଆ ଭାଷାର ସହଜ ଶକ୍ତିର ପରିଚୟ ମିଳେ ପୂର୍ବରାଗ ଚଉତିଶା ଉଲ୍ଲେଖଯୋଗ୍ୟ ଗୋଟିଏ ।

କୃଷ୍ଣ ଚନ୍ଦ୍ର-ଋଷି କୃପାନିଧାନ
କୃଶତନୁ ବୃଷଭାନୁ-ନନ୍ଦନ । ଘୋଷା ।
କଞ୍ଜ-ଗଞ୍ଜନ-ଦୃଷ୍ଟି । କେଳିକଳାକଳସି
କହ କାହିଁ ପାଇଁ ବସିଛୁ ରୁଷି । ୧ ।

ଖରତର ଶ୍ୱାସ ମନ ଅଥିର
ଖଞ୍ଜନ ନେତ୍ରୁ ବହେ ନୀର ଧାର
କ୍ଷଣେ ଉପରୋଧ ନାହିଁ । ଖେଦେ ବକ୍ତ୍ର ଝମ୍ପାଇ
କ୍ଷିତିକି ଗୃହୁଁ କର ଗଣ୍ଡେ ଦେଇ । ୨ ।

ଗୁଣମଣି ନାମ ବାନ୍ଧବ ! ବନ୍ଧୁ
ଗୋରି ! ନ ବୁଝିଲେ ବୁଝିବ କେହୁ
ଗଛ ଭୁଏକା ମୋର    ଗୋପ୍ୟ ନାହିଁ ତୋହାର
ଗଜଗମନ ! ବୁଝାମଣ କର । ୩ ।

ଘେନାଘେନସ୍ତବ କଥାମାନଙ୍କେ
ଘୋର ବଧ ପଡ଼େ ଖ୍ୟାତ ତ୍ରୈଲୋକ୍ୟେ
ଘନକେଶି ! ସେମାନ    ଘେନ ସୁଜନ ଜନ
ଘେନନ୍ତି ନାହିଁ ଅଦ୍ୟେ ଗୀତମାନ । ୪ ।

ନାହି ତୋହପରି ପ୍ରଭୁ କାହିଁ କେହିଁ
ନ ବୁଝି ଦଣ୍ଡିଲେ ରଖନ୍ତା ନାହିଁ
ନନ୍ଦସୁତ ଏ ବାଣୀ          ନଟେଶ ହୃଦୟେ ଗୁଣି
ନୃପତି ଯନ୍ଦି ବର ଦଞ୍ଜ ଭଣି । ୫ ।

---

ରାଗ-ମୁଖାରି

ଚଞ୍ଚଳ ଚମ୍ପକଅଙ୍ଗୀ ଚମ୍ପଲୋଚନା ରେ
ଚାହିଁ ଚାହିଁ ନ ଚାହୁଁଛି ମୋ ମୁଖକୁ ଧନରେ
ଚେଷ୍ଟା ଚାଖ ନଖ କେ ଚରୁ ମନ୍ଥା ଶିଖରେ
ଚେଲାଞ୍ଚଳ ଚାଳ ଟେକ ଚାରୁ ଚନ୍ଦ୍ରମୁଖୀ ରେ । ୧ ।

ଛତ୍ରପତି ଦୋହିତ୍ରୀ ଯୁବତୀ ରସବତୀ ରେ
ଛେମାବତୀ ! ଜାଣୁ ପ୍ରୀତି ଗତାଗତି ରେ
ଛାର କଥା ଶୁଣି କେ ଛେଉ ନାହିଁ ଯୌବନ ରେ
ଛଡ଼ ଛାଡ଼ ଗାର ଭାପ କୋପରୂପ ଧନ ରେ । ୨ ।

ଯିବ ଯିବ ଯିବ ଜୀବ ତୋ ଭାବ ଅଭାବେ ରେ
ଜାଣୁ ଜାଣୁ ଜାଣୁମଣି ! ଏହା କରୁ ଏବେ ରେ
ଜାଣି ମନ ଦୁଃଖରେ          ଯତନେ ଉପେକ୍ଷରେ
ଯିବା ଜୀବ ରଖ ସୁଖଦାନ୍ନି ! ପାଖେ ରଖଚରେ । ୩ ।

ଝସ ଝସବାସଜା ନୟନା ଧୀରେ ରେ
ଝମ ଝମ ଅଙ୍ଗ ଦମଦମ ହୃଦ ମୋହରେ
ଝଲ ଗୋରୀ ! ଦେଖରେ          ଝଟଛି ଭୁରଖ ରେ
ଝଗଡ଼େ ଦୃଢ଼ ନଗଡ଼େ ପଡ଼ ମୁ ନରେଖ ରେ । ୪ ।

ନାଗର, ଗୋପ, ସୁନ୍ଦର କରବାକୁ ବାହାରେ
ନାହିଁ ନାହିଁ କାହିଁଭରସାରେ ତ ମୋର କେହିରେ
ନଷ୍ଟେ ମୁଁ ତୋ ଦାସ ରେ ନ କର ନିରାଶରେ
ନଟବର ଛତ୍ରିବର ଚନ୍ଦ୍ର ପୀତବାସରେ । ୬ ।

ରାଗ-ତୋଡ଼ି

ଠେଲି ଯତ୍ନବନୀ— ବନିତା ନ ଦେନ୍ତୁ
ଦଶନାଗ୍ର କହୁଲେ ଯେତେ
ଠାଳ ଦେଲେ ପ୍ରୀତି ଠେଲ ଯିବ ପ୍ରାଣ
ପଛେ ନ ପାଇବୁ ମୋତେ
ରେ ଶ୍ୟାମ !
ଠେଲି ଚନ୍ଦ୍ରମୁଖ ଅନା
ଠିଅ ଠିଅ ହସି ଆଲିଙ୍ଗନ କର
ଦେବ ଅଙ୍ଗ ବଙ୍କା କାଣା ରେ । ୧ ।

ଠାକୁରାଣୀ ଏଣୀ— ଦୃଶୀ ଶଶୀଦ୍ୱାଯୀ
ବୁଡ଼ିଲି ମଦନ-ଜଳେ
ଠଣ ଜ୍ଞାନ-ନାବ ଦେଇ ରଖ ଜୀବ
ଜଣାଉଅଛି ଅକୁଳେ
ରେ ଶ୍ୟାମ !
ଠିକେ ଭାବ କୂଳେ ଲଗା
ଠାଠିକ ଗୁରୁ ଚନ୍ଦ୍ରଝଳ ବଦନା
ମୁଁ ତୋ ନୁହଇ ଅଲଗାରେ । ୨ ।

ତୋହ୍ର ଅନ୍ତର ଫଳକ ପଖ ବର—
ବରଜ ! ତୁ ସନ୍ତୁ ନାହିଁ
ତେଲାଇ ସେ ସୁଖ ଦୁଃଖ ମୂଳ କଷ
ଅବଗାଢ ଅଙ୍କୁ ଗୃହିଁ
ରେ ରାମା !
ଛକାଇଛ ପ୍ରାତ୍ୟେ ନୂଦ୍ର
ତୋଲା ପ୍ରତିମା ଉମା ସମ ସୁଷମା
ରମା ସମ ଦମ୍ପା ବନ୍ଧ ରେ । ୩ ।

ଥଳ ଗୃହିଁବା ରହି କହି ନଦିବା
ରହିବା ତୋଷିବା ଯେତେ
ଥାଲେ କଥାପ୍ରେକ୍ଷ ଏଥୁଁ ନ କଲେ ତୁ
ଥ ବୋଲିବେ ଲୋକେ ତୋତେ
ରେ ରାମା
ଥାଳ ଦଅ ସୁଧା-ରସ
ଥମ କନ୍ତୁ ନାହିଁ ଘୁଣୀମଣି ସଖୀ !
ଥଣା ଦାସ ପୋଷ ପାଶ ରେ । ୪ ।

ଅଣିମାଦି ଅଷ୍ଟ— ଅଇଶ୍ୱର୍ଯ୍ୟ ସିଦ୍ଧି
ଦ୍ୱାରପୁରେ ବନ୍ଧ ଦେଲେ
ଅଙ୍ଗୁରୁ ଅଣୁ ଅଣଦେଲା ତହିଁରେ
ତୋ ଶ୍ରୀମୁଖ ଦେଖିଥିଲେ
ରେ ରାମା !
ଅଜ ଏ ସୁଖ ନ କର

ଅନନ୍ଦ–ଦ୍ୱନ୍ଦ    ଗୋବିନ୍ଦ-ପଦ-ଦ୍ୱନ୍ଦ
ଭାବେ ଭକ୍ତ ସତ୍ତ୍ରବର ରେ । ୫ ।

---

ରାଗ-ଅହାରୀ

ତରୁଣୀ ମଣି–    ମଣିପୁର ଭୂଷଣି !
ଏଣୀନେତ୍ରି ! ଅବା ରେ
ତନୁ ତନୁ ଫୁଲ–    ଧନୁ କରୁଅଛୁ
ତଥି ଭାବ ବନା ରେ
ତାରତର ଅଧର ନ କମ୍ପା ରେ
ତପବଳ ଫଳ ହେବ ମୋ ସଫଳ କର ଅନୁକମ୍ପା ରେ । ୧ ।

ଥାଉଁ ଥାଉଁ ତୋଷ    ପଣ୍ଡ ପ୍ରତି ଗୃହୁଁ –
ଗୃହୁଁ ଗଲେ ନାଶ ରେ
ଥୂଳସ୍ତନା ଅନା    ଥିବ ମଧ୍ୟେ ଦିନା
ରହିବ ଅପଶ ରେ
ଥିବ କୀର୍ତ୍ତି ପ୍ରୀତିଦାୟୀ ରଖ ରେ
ଥାଣୁ ମୋହିନୀ ଭାବିନ ! ଗୁଣମଣି ତୁ ମୋ ସବୁ ସୁଖରେ । ୨ ।

ଦାଘ ନାଶେ ବସ    ଯଶ ପଡ଼ିଶେଷ
ଫେଡ଼ ତ ନ କହୁ ରେ
ଦୁଃଖ ବଢ଼ି ସୁଖ    ଏତ ଭାବ ଘତ
ହେତ ମୁଖେ ରହୁ ରେ
ଦରହାସ ପ୍ରକାଶିତ ବେଶରେ
ଦମ୍ଭ ଅବଲମ୍ବ କର ପରିରମ୍ଭ କର ହୋଇ ତୋଷ ରେ । ୩ ।

ଯତ୍ ଜାତ ଫଳ ସଫଳ ସଙ୍କିଳ
ମୁକ୍ତି ! ଅନୁକୂଳରେ
ଧର୍ମ ଅର୍ଥ ମୋକ୍ଷ— କାମହିଁ ପ୍ରତ୍ୟକ୍ଷ
ପାଇ ତୋହ କୋଳରେ
ଧନ୍ୟ ଧନ୍ୟ ଅମୂଲ୍ୟ ପ୍ରତିମାରେ
ଯାହା ରଚନାରେ ନାସ୍ତି ସଂସାରରେ ତୋ ସମ କେ ରମା ରେ । ୪ ।

ନ ବୁଝି ବିବେକ ପ୍ରଭୁ କଲେ ଦୋଷ
ରଖା କେ ଧରଣୀ ରେ
ଲୋକ ଗଣନାରେ ତୋ ଯେନ ସଖାରେ
ମୁଁ ହିନା ତରଣୀ ରେ
ନଷ୍ଟେ ନାଶ ଯିବ କଲେ ହେଳାରେ
ନୃପ ଛତ୍ରିବର ଚନ୍ଦ୍ରେ ନରେନ୍ଦ୍ରର କୃଷ୍ଣ ପାଦ ତଳାରେ । ୫ ।

---

ରାଗ—କାମୋଦୀ

ପ୍ରସନ୍ନ ଆନନ ଧନ ! ମଳିନ ନ କର
ପଞ୍ଚଶର-ଶର-ଦର ଦୂର ଶ୍ୟାମାବର !
ପ୍ରେ ପୃତିମା ରେ
ପ୍ରଭୂପଣଙ୍କେ ରଣ
ପ୍ରୀତି ଖାତ୍ରି ବଡ଼ ସୁଖ
ପତ୍ରଗମ୍ବୁ ଅବଲମ୍ବେ କର ଛାଡ଼ ଦୁଃଖ । ୧ ।

ଫୁଲ୍ଲ ଅମଳ କମଳ ଦଳ ନେତ୍ରି ସହୁ !
ଫଳା ମୋର କଣ୍ଠବର ବରଗଣ୍ଡ ଭୁଜ

ଫୁଟ ହାସି ରେ !
ଫାଲ କୋପ ତୋ ଯନ୍ତୁଁ କି
ଫେଡ଼ ନ କନ୍ତୁ କାହିଁକି
ଫଳେ ବୁଝି ବୁଝାମଣା କର ଯେ ବିବେକୀ । ୨ ।

ବଙ୍ଗୀ ସୁସଙ୍ଗୀ ରସରଙ୍ଗୀ ହୃଦେ ଜଡ଼ି
ବିହର ମୋ କୋଳେ ଖେଳେ ଗଳେ ଭୁଜ ଭିଡ଼ି
ବିଧୁମୁଖି ରେ
ବିମ୍ବାଧରୁ ଦିଅ ସୁଧା
ବୋଧ ହୋଉ କାମ-କ୍ଷୁଧା
ବିଳମ୍ବ ନ କର ବରଦସ୍ୱାଳୟା ରାଧା । ୩ ।

ଭାବ ହାବ ଲଭ ଲଭିବାକୁ ମୋର ମନ
ଭାମିନୀ ସୁଯଙ୍ଗୀ ହେବ ହେଲେ ତୁ ପ୍ରସନ୍ନ
ଭାବନିଧି ରେ
ହଜଥିବି ତୋତେ ମୁହିଁ
ଭତ୍ୟଜନ ପ୍ରାପ୍ୟେ ହୋଇ
ଭିନ୍ନ ନ କର ଅଭିନ୍ନ ମୋ ମାଗୁଣି ଏହି । ୪ ।

ମାନ ମୁଞ୍ଚ ଉଚ୍ଚ ଘଞ୍ଚ କୁଚ ସୁଶୋଭନା
ମୋତେ ସଞ୍ଚ ରଢ ରଞ୍ଚ ଚଞ୍ଚଳ ନୟନା
ମଦାଳସି ରେ
ମାର ମାରୁ ଅଛି ଦେଖ
ମୀନ ମୃଗ ନେତ୍ରୀ ରଖ
ମୁକୁନ୍ଦ ପଦାରବିନ୍ଦ ଷଟ୍ପଦ ସୁଖ ରୋ ୫ ।

ବଙ୍ଗ-ଓଡ଼ିଶୀ ଝାମ୍ପୋଲ

ଯୁବତୀକୁଳ ରତନ
ଜାଣୁନଣି ଜାଣୁ ମୋର ମନ
ଜୀବ ଥିବା ଯାକେ ତୋତେ କେ ମୂର୍ଚ୍ଛିବ
ଯୋଗୀ ପ୍ରାୟେ ବନ୍ଧୁ ତୋତେ ମୋର ଧ୍ୟାନ ।
ଜମ୍ବୁନଦଗାତ୍ରୀ ସହି !
ଜାଣି ଦୟା ନ କରୁ କିମ୍ପାଇ
ଜଗତେ ସୁବ୍ରତ ସମସ୍ତେ ଅଛନ୍ତି
ଜାଣ ତୋ ବନ୍ଧୁ ମୋର ଆନ ନାହିଁ । ୧ ।

ରଙ୍କ ମୁଁ ତୁ ରତ୍ନାକର
ରାମା ! ଦୟା-ଧନେ କ୍ରୟ କର
ରହୁଥିବ ପାଶେ ଜୀବ ଥିବା ଯାଏ
ରଖ ଦାସପଣ ଦେବ ଯେନ ମୋର
●ରତ୍ନବତୀପ୍ରେମଶୀଳା
ରସେ ରସି ରାସ-ରସ ବଳା
ରତିପତି ଅତି ଅଜୀତ କଳ୍ପିତ
ରକ୍ଷାକର ନୃପଜା କୋମଳା ବାଳା । ୨ ।

ଲକ୍ଷ୍ମୀଜୀବସୁସି ଧନ !
ଲୋଲନେତ୍ର କେତେ ତେଜୁ ବନ
ଲୋକ ସିନା ମୁହିଁ କି ରକ୍ଷା ପାଇବ
ନ କଲେ ସେ କୃପା ପ୍ରଭୁଜନ
ଲାବଣ୍ୟ-ପ୍ରତିମା ପ୍ରିୟା

ଲଭ ତୋପରି ବିବେକୀ ଶିଷ୍ୟା
ଲୀଳାବତୀ ହୋଇ    ଲୀଳା ହେଲା ଏତେ
ଲୀଳ ହାନି ବନ୍ଧୁ ବୁଝିକର ଦୟା । ୩ ।

ବେଳକୁ ବେଳ ତୋହର
ବିମ୍ବାଧୁକାଯାଇ ଅଧୀର
ବାଣୀ-ବଚନା !    ବଞ୍ଚନା କହୁ ନାହିଁ
ବିନା ଦୋଷେ ଧନ ! ଦ୍ୱେଷ ବୁଝିଛର
ବୋଧିଲେ ନ ଘେନୁ ବୋଧ
ବାଧ ଉପରେ ହେଉଛି ବାଧ
ବିଧି ବିଧାନ ମୋ    ସବୁ ବୁଡ଼ିଲାଣି
ବନ୍ଧୁ ! କେବଳ ଅଛନ୍ତି ବଧ । ୪ ।

ସରୂପ କହୁଛଲେ ଶୁଣୁନାହିଁ
ସୁଜାଣ ବିବେକ ପ୍ରଭୁ ହୋଇ
ସଂସାରେ ଅପ    ଯଶ[illegible]ସିନା ଲଭୁ
ଶ୍ୟାମାମଣି ! ନ ଘେନୁ ତୁ କାହିଁ ପାଇଁ
ସକଳ ଗୁଣେ ତୁ ପରିପୂର୍ଣ୍ଣି
ସେବ ତୋ ପାଦ ମୁଁ ହେଲେ ଶୀର୍ଣ୍ଣି
ଶୁଣିଲେ ଗୋପ—    ବଧୂମାନେ ହସିବେ
ସଦା ଚନ୍ଦ୍ରେ ଘନଶ୍ୟାମ ବର୍ଣ୍ଣି । ୫ ।

---

ରାଗ—କାମୋଦୀ

ସୁର ସୁନ୍ଦରୀ ସାର—    ମଣ୍ଡନ ! ହର ହର—
ପର-ଶରୀର ହର

## କୃପା କର

ଶାରଦ ଶଶୀମୁଖ ହେଉ ପରମ ସୁଖ
ଦେଇ ଜୀବନ ରଖ
କର ତୋର
ସାର ସରସିଜ ଯୋଡ଼ିରେ
ସୁବର୍ଣ୍ଣ ଗାଡ଼ିରେ ସୁପ୍ରେମ ପାଡ଼ିରେ
ସୁଚନ୍ଦଦାଡ଼ିରେ । ୧ ।

ସକଳ ଗୁଣ ସୀମା ହେ ବୃଷଭାନୁ ଜେମା
ମୋ ଦୋଷ କର କ୍ଷମା
ମାନ ମୁଖ
ସୁଧା ପୂରିତ ହାସ କର ଗୋର ପ୍ରକାଶ
ରସେ ରସାଇ ରାସ—
ରସ ରଖ
ସଦା ସେବକ ମୁଁ ତୋର ରେ
ସୁଦୟା କର ରେ ଶ୍ୟାମା ଉଦ୍ଧର ରେ
ଶରଣ ତୋର ରେ । ୨ ।

ହୋଇ ଅଛି ବିନତ ସହୁ ନ ପାରେ ଚିତ୍ତ
ରତିପତି ଉନ୍ମତ୍ତ
ଦେବ ହର
ହେଲେ ଉଚ୍ଛନ୍ନ ଦମ୍ଭେ ନ ରହୁ ଅବଲମ୍ବେ
କର ପ୍ରସାଦ ରାଧା
ପାଦ ଧର
ତୁଷ୍ଟି ହୋଇ ତୁଷ୍ଟ ବାମା ସେ

ଦେଲ୍ଲ ସଙ୍କାମା ସେ     ଦରଲ୍ଲ ବାମା ସେ
ଦନ୍ତି ମଧ୍ୟମା ସେ । ୩ ।

କ୍ଷଘଟେନ ରାଧା ସଙ୍ଗେ     ଶ୍ରୀକୃଷ୍ଣ କାମରଙ୍ଗେ
ମିଶି ତା ଅଙ୍ଗେ ଅଙ୍ଗେ
କୋଡୋଦ୍ବଲେ
ଛନ୍ଦ ଭୂଜ ଭୂଜେଣୀ     କରନ୍ତି ଅଲିଙ୍ଗନ
ଅଧରୁ ସୁଧାପାନ
କରେ ଭୋଳ
କ୍ଷେମେ ଛଇଳ କହ୍ନାଇ ସେ
କ୍ଷେମା ମନାଇ ସେ     କ୍ଷତରେ ବନ୍ଧୁ ସେ
କ୍ଷଡ଼ାନ୍ତ ନାହିଁ ସେ । ୪ ।

କ୍ଷଣକୁ କ୍ଷଣ ରାଧା     କୃଷ୍ଣରେ ବଢ଼େ ଶ୍ରଦ୍ଧା
କ୍ଷୀର ନୀର ପରାଏ
ମିଶିଗଲେ
ଢିଶଣ ଷଣ୍ଡ ବର     ସେ ପାଦ ନିରନ୍ତର
ଯାଇ ପରମ ସୁଖ
ଲଭେ ଭଲେ
କ୍ଷମ କ୍ଷେମର କରଣ ସେ
କ୍ଷେମ ଧାରଣ ସେ     କ୍ଷୋଭ ବାରଣ ସେ
ଢେଭ ଶରଣ ସେ । ୫ ।



# ବୋଲି ଚଉତିଶା

ଜଗନ୍ନାଥ ଦାସଙ୍କ ଫୁଲ ବଉଳବେଣୀ ଗୀତ ପରି ଏହି ବୋଲି ଚଉତିଶା ଦିନେ ଭଜନର ଗ୍ରନ୍ଥଅଙ୍ଗେ ପ୍ରଚଳିତ ଥିବାର ବୋଧହୁଏ । କିନ୍ତୁ ଦେଶରେ ନୂଆ ଧାରଣା ଖେଳିବା ଫଳରେ ଲୋକଙ୍କର ପ୍ରୟୋଜନ ଓ ରୁଚି ଅଳ୍ପେ ଅଳ୍ପେ ବଦଳି ଯାଉଥିବାରୁ ଏ ଧରଣର ଗୀତ ପୂର୍ବେ ଯେପରି ଜନପ୍ରିୟ ହୋଇଥିବ ଏବେ ଆଉ ସେପରି ହେବାର ସମ୍ଭାବନା ନାହିଁ ।

କଦମ୍ବ ଗଛର ଛାଇ ଗୋ
କଦମ୍ବ ମୂଳରେ ରହିଲେ କହ୍ନାଇ
ଗୋପାଳୁଣୀ ହେଲେ ବାଇ ଗୋ । ୧ ।

ଖଣ୍ଡକୋଳଗଛ ଛାଇ ଗୋ
ଖଟୁଥିଲୁ ଅମ୍ଭେ ସବୁ ଗୋପବାଳୀ
ଖୋଜିଲେ ଭେଟ ନ ପାଇ ଗୋ । ୨ ।

ଗମ୍ଭାରୀ ଗଛର ଛାଇ ଗୋ
ଗୋଠରେ ଗୋପୀଙ୍କୁ ବୋଲଣା ହୋଇଲା
ଯମୁନା ଗାଧୋଇ ଯାଇ ଗୋ । ୩ ।

ଘାଣ୍ଟିଆ ଗଛର ଛାଇ ଗୋ
ଘୋର ବୃନ୍ଦାବନେ ମୁରଲୀ ବଜାନ୍ତି
ଘାଗୁଡ଼ି-ମାଳ ଲମ୍ବାଇ ଗୋ । ୪ ।

ନରକୋଳ ଗଛ ଛାଇ ଗୋ
ନରସିଂହ ରୂପେ ହିରଣ୍ୟ ମାଇଲେ
ପ୍ରହଲ୍ଲାଦ ପଦ ଦେଇ ଗୋ । ୫ ।

ଚନ୍ଦନ ଗଛର ଛାଇ ଗୋ
ଛଟା ସଳଖରେ ସାଜିଥାଇ ଚୂଳ
ଚଭୂଷି ମୋହିବା ପାଇଁ ଗୋ । ୬ ।

ଛଭୂଆସ୍ମି ଗଛ ଛାଇ ଗୋ
ଛଠ ପିଠି ନନ୍ଦ କୋଳେ ବସାଇଲେ
ଛୁଞ୍ଚଳ ବାଳ ମାଧୋଇ ଗୋ । ୭ ।

ଜଜାଙ୍ଗ ଗଛର ଛାଇ ଗୋ
ଯେଉଁଦିନୁ ଗଲେ ନନ୍ଦର ନନ୍ଦନ
ଯମୁନା ସ୍ନାନ ନାହିଁ ଗୋ । ୮ ।

ଝୁମୁକା ଗଛର ଛାଇ ଗୋ
ଝଟକୁଅଛି ସେ ମୟୂର-ଚନ୍ଦ୍ରିକା
ଝଟକି ପଡ଼ଇ ମଣି ଗୋ । ୯ ।

ଞାମ୍ବ ଗଛର ଛାଇ ଗୋ
ନନ୍ଦର ନନ୍ଦନ ଶ୍ରୀ ମଧୁସୂଦନ
ନନ୍ଦମନ୍ଦିରକୁ ଯାଇ ଗୋ । ୧୦ ।

ଟଭା ଗଛ ମୂଳ ଛାଇ ଗୋ
ଟେକପଣ କରି ଇନ୍ଦ୍ର ବାଦ କଲା
ରଖିଲେ ଗୋପର ଗୋଷ୍ଠ ଗୋ । ୧୧ ।

ଠାକୁର ଶୀଭୂଜ—ଛାଇ ଗୋ
ଖୋଜି ଖୋଜି ମୁନି ଭେଟ ନ ପାଇଲେ
ଠୂଳି ଠୂନ୍ୟ ପରେ ଥାଇ ଗୋ । ୧୨ ।

ଡାଳମ୍ବ ଗଛର ଛାଇ ଗୋ
ଡକା କରି ସର ଲବଣୀ ଖାଆନ୍ତି
ଡାକଲେ ପଳାଇ ଯାଇ ଗୋ । ୧୩ ।

ଢାମଣା ଗଛର ଛାଇ ଗୋ
ଢମ ପଣ କରି ପୋତନା ଅଇଲା
ପ୍ରାଣ ଶୋଷିଲେ ମାଧୋଇ ଗୋ । ୧୪ ।

ଅରୁଣ ଗଛର ଛାଇ ଗୋ
ଅରଣ୍ୟ ଭିତରେ ବାରତା ପାଇଲେ
ଦଶରଥ ନାଶଯାଇ ଗୋ । ୧୫ ।

ତଗ୍ରାଠ ଗଛର ଛାଇ ଗୋ
ତୁର ତୁର କରି ମୁରଲୀ ବଜାନ୍ତି
ତନୁ ଜର ଜର ହୋଇ ଗୋ । ୧୬ ।

ଥରଥରି ଗଛ ଛାଇ ଗୋ
ଥଣ୍ଟ ଚିରି ବକାସୁରକୁ ମାଇଲେ
ରଖିଲେ ଗୋପର ଗୋଈ ଗୋ । ୧୭ ।

ଦକ୍ଷିଣା ଗଛର ଛାଇ ଗୋ
ଯୁଗ ପ୍ରଳୟରେ ମାରକଣ୍ଡ ଋଷି
ଗର୍ଭରେ ରହିଲେ ଯାଇ ଗୋ । ୧୮ ।

ଧନିଆ ଗଛର ଛାଇ ଗୋ
ଧରଣୀ-ଧର ତ ମଥୁରାକୁ ଗଲେ
ଧଇର୍ଯ୍ୟ ନ ରହେ ଦେହ[illegible] ଗୋ । ୧୯ ।

ନଳଦ୍ଧା ଗଚ୍ଛର ଛଇ ଗୋ
ନଉଲି ବଂଶୀ ନନ୍ଦର ନନ୍ଦନ
କୁବୁଜା ଉଜ୍ଜ୍ୱଳ ହୋଇ ଗୋ । ୨୦ ।

ପଣସ ଗଚ୍ଛର ଛଇ ଗୋ
ପଦ୍ମ ଫୁଲ ପ୍ରାୟେ ନନ୍ଦର ନନ୍ଦନ
ଅକ୍ରୂର ଗୋପରୁ ନେଇ ଗୋ । ୨୧ ।

ଫଣଫଣା ଗଚ୍ଛ ଛଇ ଗୋ
ଫଗୁ ଖେଳିବାକୁ ପରମାନନ୍ଦ ଯେ
ମଥୁରା ରହିଲେ ଯାଇଁ ଗୋ । ୨୨ ।

ବଉଳ ଗଚ୍ଛର ଛଇ ଗୋ
ବୃନ୍ଦାବନେ ବ୍ରହ୍ମା ବତ୍ସ ହରି ନେଲେ
କୃଷ୍ଣଙ୍କ ଭେଟ ନ ପାଇ ଗୋ । ୨୩ ।

ଭାଲୁଅ ଗଚ୍ଛର ଛଇ ଗୋ
ଭାରତ ଯୁଦ୍ଧରେ ସାରଥି ହୋଇଲେ
ଅର୍ଜୁନ ରଥରେ ଯାଇ ଗୋ । ୨୪ ।

ମଉଚ ଗଚ୍ଛର ଛଇ ଗୋ
ମାଇଁ ମାଇଁ ବୋଲି ରାଧାଙ୍କୁ ଡାକନ୍ତି
ଅନ୍ଧ ବୁଢ଼ୀ ଘରେ ନାହିଁ ଗୋ । ୨୫ ।

ଜମ୍ବୁରୀ ଗଚ୍ଛର ଛଇ ଗୋ
ଜଗତ ଜୀବନ ଯଶୋଦା–ନନ୍ଦନ
ମଥୁରା ରହିଲେ ଯାଇଁ ଗୋ । ୨୬ ।

ଭଙ୍ଗ ମଞ୍ଜୀ ଗଛ ଛାଇ ଗୋ
ରଙ୍ଗେ ରଙ୍ଗେ ବଂଶୀ ଧରି ନାଚୁଥାନ୍ତି
ନାଟୁଆ ପରାଏ ଡେହାଇ ଗୋ । ୨୭ ।

ଲବଙ୍ଗ ଗଛର ଛାଇ ଗୋ
ଲଉଡ଼ି ଧରଣି ଶ୍ରୀମଧୁସୂଦନ
ନନ୍ଦ ମନ୍ଦିରକୁ ଯାଇ ଗୋ । ୨୮ ।

ବଳ କୋଳି ଗଛ ଛାଇ ଗୋ
ଗୋପର ଗୋପୀଙ୍କି କେଳି କରିଥିଲେ
ବୃନ୍ଦାବନରେ ତ ନେଇଁ ଗୋ । ୨୯ ।

ଶିଆଳି ଗଛର ଛାଇ ଗୋ
ସାତ ଦିନ କୃଷ୍ଣ ବିଦ୍ୟା ପଢ଼ିଗଲେ
ସଙ୍ଗେ ବଳରାମ ଭାଇ ଗୋ । ୩୦ ।

ଷଜନା ଗଛର ଛାଇ ଗୋ
ସାତ ଦିନ ତହିଁ ଇନ୍ଦ୍ର ବାଦ କଲା
ରଖିଲେ ଗୋପର ଗୋଈ ଗୋ । ୩୧ ।

ସୁନାରି ଗଛର ଛାଇ ଗୋ
ଯମୁନାରେ କୃଷ୍ଣ ସିନାନ ସାରିଲେ
ଅକ୍ରୂର ସଙ୍ଗତେ ଥାଇ ଗୋ । ୩୨ ।

ହରଡ଼ା ଗଛର ଛାଇ ଗୋ
ବୀର ହନୁମନ୍ତ ପବନର ସୁତ
ସୀତା ଠାବ କଲେ ଯାଇଁ ଗୋ । ୩୩ ।

ଝୀରଚୋରା ଗଚ୍ଛ ଛାଇ ଗୋ
ଝେମେ ନଧୁଦାସ ଶରଣ ମାଗଇ
ଝଷିଲେ ଗୋପୀ ମାଧୋଇ ଗୋ । ୩୪ ।

---

# ମାୟାମୃଗ ଚଉତିଶା

ଭାଷା ଦୃଷ୍ଟିରେ ମାୟାମୃଗ ଚଉତିଶା ଅତି ପୁରାତନ ପରି ବୋଧହୁଏ । ଏହାର ସାରଲ୍ୟମୟ ଅଭିବ୍ୟକ୍ତି ଯୋଗୁଁ ଚଉତିଶାଙ୍କର ସ୍ଥାନ ମଧ୍ୟ ଉଚ୍ଚ । ଏହା ଶିକ୍ଷିତ ଶ୍ରେଣୀର ନ ଥିଲା ପରି ଜଣାପଡ଼େ ।

ରସକୁଲ୍ୟା

କରେ କୋଦଣ୍ଡ ଧରି ରାମ ଶର
କୁରଙ୍ଗ ମାରିଲେ ବନଚର
କଲା ନାଦ ରଖ ଲକ୍ଷ୍ମଣ ବାଣୀ
କି କି ଉପୁଜିଲା ନାଦେ ନ ଜାଣି ସେ
କରମ ମୋ ବଡ଼ ମନ୍ଦ ହେ
କି ଦୋଷ କଲି ମୁଁ ପିତା ମାତାଙ୍କରେ
ମୋତେ ପେଷି ଦେଲେ ବନ ହେ । ୧ ।

ଖେଦମନ ରାମ ସୀତସ୍ଥା ତହିଁ
ଖଣ୍ଡେ ଦୂରେ ସେହି ରହିଲେ ଯାଇ
କ୍ଷୀଣବାଣୀ କହେ ଜଣାଇ ଖର
କ୍ଷୁଧା ତୃଷାରେ ନଉଛଇ ଜର
ଖଣ୍ଟ ନ ଥିଲୁ କି ଭାଇ ରେ
ଖଞ୍ଜନଲୋଚନୀ ଜନକଜ ଝିଅ
ଆଉ ମୁଁ ପାଇବି କାହିଁ ରେ । ୨ ।

ତରୁବର ସୀତା କହିଲେ ମୋରେ
ଗିରିପର୍ବତ କି ପଡ଼ିଲ୍ଲି ଶରେ
ଗଗନ ମେଘଙ୍କୁ ସାକ୍ଷୀ କରାଇ
ଗମିଅଛନ୍ତି ଶଙ୍କା ମନେ ପାଇ
ଗରୁ ଲାଗୁଅଛୁ ମନେ ଯେ
ଗୋବିନ୍ଦ ସ୍ୱମର ଗଲେ ବେନି ଭାଇ
ସୀତା ଛନ୍ତି ଯହିଁ ସ୍ଥାନେ ଯେ । ୩ ।

ଘରେ ପଶି ରାମ ନ ଦେଖି ସୀତା
ଘରୁ ବାହାର ପଡ଼ିଗଲେ ମୂର୍ଚ୍ଛା
ଘଡ଼ିକେ ଲକ୍ଷ୍ମଣ ଧରିଲେ ନେଇ
ଘନବାତେ ଯେହ୍ନେ ଲୋଟେ କଦଳୀ ସେ
ଘରଣୀ ସ୍ମରି ମନେ ଯେ
ଘରୁ ବାହାର ହୋଇଣ ସୀତା ଦେଈ
ଭୂ କଥା ଲୁଚନ୍ତୁ ବନେ ଯେ । ୪ ।

ନବ ପଲ୍ଲବ ତରୁଲତା ମାନ
ନଦୀ ଗୋଦାବରୀ ଚିତ୍ରକାନନ
ନାନା କୁସୁମେ ତରୁ ବନଲତା
ନଷ୍ଟେ ଜାଣିଛ କି ସୀତା-ବାରତା ସେ
ନରେଖ ହେଲି ମୁଁ ଦେଖ ହେ
ନୟନ ଦେଇ ଜଣେ ଜଣେ ପୁଚ୍ଛନ୍ତି
ନାହିଦାନ ହୋଇ ରଖ ହେ । ୫ ।

ଚନ୍ଦ୍ରଶୋଭା ଜିଣି ଚନ୍ଦ୍ରବଦନୀ
ଚଞ୍ଚଳ ଚକିତ ମୃଗ-ଲୋଚନୀ

ଗଲୁ ବିମ୍ବାଧରୀ କନକ କାନ୍ତି
ଚରଣଯୁଗ ଅରବିନ୍ଦ ଜ୍ୟୋତି ଯେ
ଚନ୍ଦ୍ରାନନରୂଥିବ ମନ୍ଦ ହେ
ଚରଣ ଧନ୍ୟ     ଲକ୍ଷ୍ମଣ କହୁଛନ୍ତି
ଗଲ ନ ଥିବା ଏ ବନ ହେ । ୬ ।

ଛତ ଯାଉ ଜୀବ ରହୁଛି ପିଣ୍ଡ
ଛିଡ଼ିପଡ଼ୁ ମୁଣ୍ଡେ ଆକାଶ ଖଣ୍ଡ
ଛତ୍ରିଯୁକ୍ତେ ଛିନ୍ନପତ୍ର ସୂଚନ
ଛିଦ୍ର କରି କଥା କହିବେ ମୋତେ ଯେ
ଛଣ୍ଡାଇ କେ ନେଲା ସଖୀ ହେ ।
ଛଡ଼ ଯାଉଅଛି     ପକ୍ଷବ—ଲୁଡ଼ଅ
ଛୋଟେ ଅଣ୍ଡେକର ଦୁଃଖୀ ମୁଁ । ୭ ।

ଜୀବନନ୍ତୁମାନେ ଦେଖିଲେ କହ
ଯାଉଅଛି ମୁଁ ଯେ ଅନାସ୍ତ ହୋଇ
ଜାନକୀ ନାମ ଜନକର ଝିଅ
ଜାଣିଥିଲେ ସୀତା ବାରତା କହ
ଯାନ୍ତେ କହୁ ଦୂର ପଥ ଯେ
ଜୀବନେ ଥାଉ     ପକ୍ଷୀଚୟା କହଉ
କୋଦଣ୍ଡ ଦେଖିଣ ହସ୍ତ ହେ । ୮ ।

ଝାଡ଼ବାସୀ ଅମ୍ଭେ ହଗୋଷ୍ଠି ଭାଇ
ଝାଡ଼େ ବୁଲୁଛୁ ଧରଣୀ ହରାଇ
ଝିମସେ ନ ରଖି କ ଦୋଷ ଦେଲ

ଝାଡ଼େ ପେଷି ଦେଲେ ପିତା ଜନନୀ ସେ
ଝାଡ଼େ ଗଲା ବଡପଣ ଯେ
ଝାଡ଼ରେ ଥାଇ ପକ୍ଷୀଚଟା କହଇ
ସୀତାକୁ ନେଲା ରାବଣ ଯେ । ୯ ।

ନେଉଥିଲା ବେଳେ ତୋର ସୀତାକୁ
ନଖ ଚେଞ୍ଚଣୀ ବିଦାରିଲି ବୁକୁ
ନୂହାଖଡ଼ଗେ ମୋ କାଟିଲା ଡେଣା
ନେଲା ଲଙ୍କାଗଡ଼ ମୂଢ଼ ରାବଣା
ନିକଳଙ୍କ ଚନ୍ଦ୍ରକୁଳ ହେ ।
ନଷ୍ଟ ରାବଣ ମାରି ସୀତା ଘେନିଣ
ଅଯୋଧ୍ୟା ଭୁବନେ ଚଳ ହେ । ୧୦ ।

ଟଳପଡ଼ି ପକ୍ଷୀ ଗଲା ପରାଣ
ଟେକି ଧଇଲେ ରଘୁକୁଳରାଣ
ଟାକିଥିଲା ବିଧି ବନେ ଦଇବ
ଟେକି ଧଇଲା ରାମ ବେନହସ୍ତ ସେ
ଟେକି ପକାବନ୍ତେ ଭୂଣ୍ଡେ ହେ ।
ଟାଣପଣ ଗୁଡ଼ା ଶ୍ରୀରାମ କହନ୍ତି
ନେଉଛି ଅନାସ୍ତ ପିଣ୍ଡେ ହେ । ୧୧ ।

ଠିକ ବାଣୀ କହେ ଲକ୍ଷ୍ମଣ ବୀର
ଠାକୁର ହୋଇଣ ଏଡ଼େ ଅଥିର
ଠାବ କର ଖାପୁ ଖଡ଼ଗ ଘେନି
ଠିକେ ପ୍ରହାର କଲେ ବୀରମଣି ସେ
ଠିକେ ଗଲା ତାର ପ୍ରାଣ ଯେ

ଠିକେ ଅସୁର          ସ୍ୱରପୁରେ ପ୍ରବେଶ
ଠିକ ବଚନ ସିଦ୍ଧାଣ ଯେ । ୧୨ ।

ଡାକ ଗନ୍ଧର୍ବେ ଯେ ବୋଲନ୍ତି ବାଣୀ
ଡରାଉଥିଲା ସେ ଇନ୍ଦ୍ରର ରାଣୀ
ଡେଇଁ ବାସବେ ବଧାଏ ମାଇଲା
ଡରାଇ ଶଚୀପତି ଶାପ ଦେଲା ସେ
ଡାକ କହୁଅଛୁ ଶୁଣ ହେ
ଡରେ ସୁଗ୍ରୀବ          ଋଷିମୂଖ ପର୍ବତେ
ଚଳ ଚଳ ରଘୁଗଣ୍ଡ ହେ । ୧୩ ।

ଢଳ ବଚନ କହନ୍ତି ରଘୁନାଥ
ଢାଳେ ଚଳଲେ କିଷ୍କିନ୍ଧର ପଥ
ଢଳଇ ପଙ୍କଜ—ନୟନଂ ନୀର
ଢଳ ମିଳିଲେ—ଶବର ମନ୍ଦିର ସେ
ଢଳ କହୁଛନ୍ତି ବାଣୀ ଯେ
ଢାଉବର୍ଣ୍ଣ ବୃନ୍ଦ—          ଫଳ ଯୋଗାଇଥିଲା
ଦେଲା ଶବରଣୀ ଆଣି ଯେ । ୧୪ ।

ଆସନ ଦେଇଣ ପୁଚ୍ଛେ ବଚନ
ଅଇଲ କି କେ ମୋର ସନ୍ନିଧାନ
ଅଛ ଅଶକତ ତରୁଣୀ ଦେହ
ଉଚ୍ଚେ ବେଦନ କରି କି କେ କହ ସେ
ଅଛି ଅଶକତ ବାଣୀ ସେ
ଅଛ ସଙ୍କଟ          ବିଧାତା ଦେଇଅଛି
କାନ୍ଦି କହେ ରଘୁମଣି ଯେ । ୧୫ ।

ତ୍ରୈଲୋକ୍ୟ ଜଣି ଦଶରଥ ରାୟେ
ତାହାଙ୍କର ଅମ୍ଭେ ଜ୍ୟେଷ୍ଠ ତନୟେ
ତାତ ଆଜ୍ଞାରେ ବନବାସ କଲୁ
ତେଣୁ ଏ ବନେ ସୀତା ହରାଇଲୁଁ ଯେ
ତେଣୁ ବୁଲୁଁ ଅଜ୍ଞ ବନ ଯେ
ତୁମ୍ଭେ ଜାଣିବଟ ଜନକ ଝିଅକୁ
ତାର ବିନୁ ନାହିଁ ଆନ ଯେ । ୧୬ ।

ଥୟେ ବଚନ କହେ ଶବରଣୀ
ଥିରେ ଶୁଣମା ରଘୁକୁଳମଣି
ଥିଲା ସୀତା କୋଳେ ଏ ବଂଶବାନ୍ଧୁ
ଥିରେ ଚନ୍ଦ୍ରମାକୁ ଗ୍ରାସିଲା ରାହୁ ସେ
ଥୟେ କହିଲି ବାରତା ଯେ
ଥିବ ସୁଗ୍ରୀବ ଋଷ୍ୟମୂଖ ପର୍ବତେ
ବଳେ ସେ ଆଣିବ ସୀତା ଯେ । ୧୭ ।

ଦଣ୍ଡେ ରହି ରାମ କଲେ ଗମନ
ଦେଖିଲେ ଜମ୍ବୁବନେ ହନୁମାନ
ଦାଶରଥି ହନୁ, ଲକ୍ଷ୍ମଣ ତୁଲେ
ଦଇବ ଯୋଗେ ସୁଗ୍ରୀବ ଭେଟିଲେ
ଦୁହେଁ ଦୁହିଁଙ୍କ ଅବସ୍ଥା ଯେ
ଦୁଃଖ ଦେଖାଇ କୁନାକୁହି ହୁଅନ୍ତି
ଏକକୁ ଅରେକ କଥା ସେ । ୧୮ ।
ଧୀରେ ବଚନ ସୁଗ୍ରୀବର କହେ
ଧନ୍ୟ ଅଯୋଧ୍ୟା ରଘୁକୁଳରାୟେ

ଧନ୍ୟ ଦଶରଥ ପିତାଜନନୀ
ଧନ୍ୟ ରାଜପତି ତୁମ୍ଭଙ୍କ ରାଣୀ ସେ
ଧନ୍ୟ ଯୁବା ବେନିଜନ ହେ
ଧରିଅଛ ଧନୁ ଶିରେ ଜଟାଧାରୀ
ଛ ଅର୍ଥ ବନେ ଭ୍ରମଣ ଯେ । ୧୯ ।

ନିଜ ମାତା ବୋଲେ ପିତା ଆମ୍ଭଙ୍କୁ
ନିରାଶ କରି ପେଷିଲେ ବନକୁ
ନଦୀ ଗୋଦାବରୀ କୂଳରେ ଆସି
ନଷ୍ଟେ ହରାଇଲି ସୀତା ସୁକେଶୀ ସେ
ନଦନଦୀ ବନ ଘୋର ଯେ
ନ ପାଇଲି ଖୋଜି ଜନକଝିଅକୁ
ପଗୃବଛି ଧନୁଧର ମୁଁ । ୨୦ ।

ପ୍ରଭୁ ବଚନେ ସୁଗ୍ରୀବର ତହୁଁ
ପାଇଲା ବସ୍ତ୍ର ଅଳଙ୍କାର ଦେଇ
ପଦ୍ମଲୋଚନୀର କହେ ବଚନ
ପ୍ରତଯେ ନେଇଛି ଲଙ୍କା ରାଜନ ସେ
ପ୍ରମ ବ୍ରହ୍ମ ରାମ ଦେଖ ହେ
ପ୍ରଭୁଙ୍କ ଛାମୁରେ ବାରତା କହିବ
ପାଇଲି ବହୁତ ଦୁଃଖ ମୁଁ । ୨୧ ।

ଫେଡ଼ି ବସନ ଦେଲେ ଅପ୍ସୃମାନ
ଫରୁଣା ହୋଇ ବୋଲନ୍ତି ବଚନ
ଫାନ୍ଦ ପ୍ରାପ୍ତେ ଥାଉ ସଖୀ–ସଙ୍ଗାଙ୍ଗେ
ଫାଟି ପଡ଼ିଅଛୁ ଯେଉଁ ସରାଗେ

ଫେଡ଼ କନ୍ଧ ମୋ ଆଗରେ ରେ
ଫାନ୍ଦ ହୃଦୟ ଯାଉ ମୋର ଜୀବନ
ଜନକ ଝିଅ ଆଗରେ ରେ । ୨୨ ।

ବାବୁ ବିଧାତା ଏହା କି କି କଲୁ
ବନବାସରେ ସୀତା ହରାଇଲୁ
ବାହୁଡ଼ିଥିଲୁ ମନ୍ଦ ଗଲ୍ପ କେଣେ
ବାରତା ପ୍ରତକ୍ଷେ ନେଲ୍ପ ଶ୍ରବଣେ ସେ
ବଇଦେହୀଚନ୍ଦ୍ରା ଶୋକେ ଯେ
ବାହୁଡ଼ାବେଳେ ଅଯୋଧ୍ୟାକୁ ଗଲେ ମୁଁ
କି ବୋଲି ବୋଲିବେ ଲୋକେ ସେ । ୨୩ ।

ଭୟେ ନ କର ସୁଗ୍ରୀବର କହୁ
ଭଲ ସହୁଅଛୁ ମୋହୋର ଦେହୁ
ଭାରଯା ଦୁଃଖେ ସହସ୍ରେ ବରଷ
ଭଖେ କନ୍ଦମୂଳ ନିର୍ଝର ବାସ ଭୂ
ଭୂପ ଶ୍ରେଷ୍ଠ ରଘୁମଣି ହେ
ଭାରଯା ତୁମ୍ଭର ଅଳପ ଦିନେଣ
ଦେବୁ ଆମ୍ଭେ ନଷ୍ଟେ ଆଣି ହେ । ୨୪ ।

ମୈତ୍ର କଥା ଶୁଣି କହେ ବଚନ
ମଇଦ ଙ୍ଖପୁଙ୍କୁ ଯମ ଭୁବନ
ମନେ ଚନ୍ତା କରି ଉଠିଲେ ବେଗେ
ମଇଙ୍କ ସହିତେ ଲକ୍ଷ୍ମଣ ସଙ୍ଗେ ସେ
ମାଇଲେ ଅସ୍ତ୍ରିରେ ଗୋଡ଼ ଯେ

ମେରୁ ସମ ଅସ୍ଥି            ଗଗନ ଶିଖରେ
ଉଡ଼ିଲା ଦୁନ୍ଦୁଭି ହାଡ଼ ଯେ । ୨୫ ।

ଯାନ୍ତ୍ରେଣ ପଥେ ଦଶରଥ ବାଳା
ଜୟ କରିଗଲେ ସପତ ଶାଳା
ଯାଇ କିଷ୍କିନ୍ଧା ନଗରେ ପ୍ରବେଶ
ଜାଣିଲା ବାଳୀ କାହାର ସାହାସ ସେ
ଯାଇଁ ଡାକେ ଗପୁଦ୍ୱାରେ ଯେ
ଯତନେ ନେଇ            ବିଧାଏ କି ମାଇଲା
ବାଳିଲା ସୁଗ୍ରୀ ଉପରେ । ୨୬ ।

ରାଗ ପାଇ ବାଳୀ ବସିଲା ମାଡ଼ି
ରାମ ଲୁଚିଥିଲେ ଲତା ଓହାଡ଼ି
ରାଜୀବଲୋଚନ ପୂରେଇ ଶର
ରୋଷେ ଛାଡ଼ିଦେଲେ ବାଳୀ ଉପର ସେ
ରବ ଦେଇ ମଲା ବାଳୀ ସେ
ରୋଦନ କରନ୍ତି            ଉଚ୍ଚସ୍ୱରେ ଲୋକେ
ସୁଗ୍ରୀବ ଦେଇଣ ଗାଳି ଯେ । ୨୭ ।

ଲକ୍ଷ୍ମଣ ରାମ ସୁଗ୍ରୀବ ବଚନ
ଲେଉଟାପାଟରେ ହୋଅ ରାଜନ
ଲଙ୍କାଗଡ଼ ବଳେ ରାବଣ ମାରି
ଲୋଡ଼ ଅଣି ମୁଁ ଜନକକୁମାରୀ ଭୁ
ଲୋକ ଲାଜ ବଡ଼ ଭୟେ ହେ
ଲବଣ୍ୟ ହୋଇ            ସୁଗ୍ରୀବର କହଇ
ବରଷା ସରବା ଯାଏ ହେ । ୨୮ ।

ବାନ୍ଧଲେ ସୁଗ୍ରୀବର ମୁଣ୍ଡେ ପାଟ
ବରଷା ଆଗମେ ରାମ ଉଚ୍ଚାଟ
ବାସେ କଲେ ମାଲ୍ୟବନ୍ତ ପର୍ବତ
ବସାକର ରହେ ଦଶରଥ ତନେ ସେ
ବନ ଜୀବଜନ୍ତୁ ଦେଖି ସେ
ବଇଦେହୀ ନାମେ ଜନକ ଝିଅକୁ
ହରାଇ ହେଲ ଦୁଃଖୀ ମୁଁ । ୨୯ ।

ସୌମିତ୍ରି ସଙ୍ଗେ ବରଷା ବଞ୍ଚିଲେ
ଶରଦ ସମୟେ ମୈନ୍ଦ ଅଇଲେ
ସମୁଦ୍ର ଡେଇଁ ଗଲେ ହନୁମାନ
ସୀତା ଠାବ କଲେ ଅଶୋକ ବନ ସେ
ଶ୍ରୀରାମ ବାରତା କହି ସେ
ସୁବର୍ଣ୍ଣ ମୁଦି ଦେଇ ମଣି ଘେନିଣ
ଲଙ୍କାପୁର ଗଲା ଦହି ସେ । ୩୦ ।

ସୀତା ବାରତା କହନ୍ତା ପାବନ
ସନ୍ତୋଷ ହୋଇଲେ କୋଦଣ୍ଡପାଣି
ସିନ୍ଧୁ ତଟରେ ଭେଟି ବିଭୀଷଣ
ଶରଣ ପଶିଲା ରାମ ଚରଣ ସେ
ଶାଢ଼ୀ ତାକୁ ରାମ ଦେଇ ସେ
ସିନ୍ଧୁ-ବାନ୍ଧ ରାମ ପାର ସେ ହୋଇଲେ
ଶୁଭେ ସୁବଳସ୍ଥା ଯାଇ ସେ । ୩୧ ।

ସଦଳ ହୋଇ ଯୁଝିଲା ରାବଣ
ସମରେ ରାମ ମାରି କୁମ୍ଭକର୍ଣ୍ଣ

ସୌମିତ୍ରି ବଧ କଲେ ଇନ୍ଦ୍ରଜିତ
ସଙ୍ଗ୍ରାମେ ଭୂଲେ ରାବଣ ହତ ସେ
ସ୍ୱର୍ଗେ କଲେ ଜୟ ଜୟ ହେ ।
ସ୍ୱର୍ଣ୍ଣପୁରରେ ନୃପତିପଣେ ଥାପି
ପାଏ ବିଭୀଷଣ ଠାଏ ହେ । ୩୨ ।
ହରି ରାଜ ଋକ୍ଷ ବଳର ମଧ୍ୟ
ହୁତାଶନେ ସାଧି ସୀତା ସହିତ
ହାଟକପଟ୍ଟିତ ପୁଷ୍ପ ବିମାନେ
ହେଲେ ପ୍ରବେଶ ଅଯୋଧ୍ୟା ଭୁବନେ ଯେ
ହାସ୍ୟ କଲେ ସର୍ବ ଲୋକ ଯେ
ହରଷେ ଭରତ ରାମ ପାଦେ ପଡ଼ିଣ
ଛାଡ଼ିଲେ ସକଳ ଶୋକ ଯେ । ୩୩ ।
କ୍ଷମାଶୀଳ ପ୍ରଭୁ ରଘୁନାୟକ
କ୍ଷିତିଜା କୋଳେ ଦେଲେ ଅଭିଷେକ
କ୍ଷତ୍ରଅର୍ଘ୍ୟ ଦେଲେ ଋଷି ବରାନ୍ତ
କ୍ଷଣେ ମାତାଗଣେ ଦେଖୁଛନ୍ତି ସେ
କ୍ଷିତିବର ରାମଚନ୍ଦ୍ର ହେ ।
କ୍ଷୁଡ଼ିବି ନାହିଁ ଜୀବନ ଥିବା ଯାଏ
ଏହି ଆଜ୍ଞା ମୋତେ ଦେଉ ହେ । ୩୪ ।

---

ସମାପ୍ତ

କଟକ ପ୍ରାଚୀ ମୁଦ୍ରଣାଳୟରେ ଶ୍ରୀ ହେମ ଚରଣ ପଟ୍ଟନାୟକ ବି. ଏ. ଙ୍କ ଦ୍ୱାରା ମୁଦ୍ରିତ ।

# ଚଉତିଶା ଚନ୍ଦ୍ରିକା

## ଆର୍ତ୍ତତ୍ରାଣ ବା ଜଣାଣ ଚଉତିଶା ।

୧ । କୃପାବ୍ଧି—ଦୟାସାଗର ଜଗନ୍ନାଥ । କାହୁଁ ମୁଁ ଉଦର ହୋଇ—କାହୁଁ ନିନନ୍ଦ ହୋଇ । ସରିତପତି—ସମୁଦ୍ର । ତହିଁ—ଠାରେ । ବତନ—ଅଷ୍ଟାର୍ଘ୍ୟ ।

୨ । ଖିଳବ୍ରହ୍ମାଣ୍ଡୋଦରେ—ସମଗ୍ର ବିଶ୍ୱରେ । ଖଗଲଲକ କାନ୍ତ—ପକ୍ଷୀ ଶ୍ରେଷ୍ଠ ଗରୁଡ଼ର ସ୍ୱାମୀ ।

୩ । ଗ୍ରାହ—କୁମ୍ଭୀର । ରଥାଙ୍ଗ—ଚକ୍ର । ଘନ୍ତ୍ରମାନ—ଗରୁଡ଼ । କେତନ—ବାହନ । ଜୀବନଧି—ସମୁଦ୍ର ।

୪ । ଅକୂପାର—ସମୁଦ୍ର । ଘନେ—ଜଳରୂପେ । ଘୃଣା—ଦୟା । ଘଟ କୁମର—ଅଗସ୍ତି । ସେ ଯେପରି ସମୁଦ୍ରକୁ ଚଳୁ କରି ଦେଇଥିଲେ ସେହିପରି ମୋର ବିପଦ ତୁମ୍ଭର ଦୟାରୂପ ସମୁଦ୍ରକୁ ଚଳୁ କରିଦେଲା ।

୫ । ପ୍ରସ୍ରବଣ—ଅଶ୍ରୁ । ନବପକ୍ଷ—ଚନ୍ଦ୍ରନ ।

୬ । ଚତୁର୍ବର୍ଗ—ଧର୍ମ, ଅର୍ଥ, କାମ, ମୋକ୍ଷ । ପଞ୍ଚଶର—ଶଙ୍କର । ଚଞ୍ଚଳା—ଲକ୍ଷ୍ମୀ । ଚ୍ୟୁତ—ଖଣ୍ଡିତ । ନୀଳଶୈଳର ଚୂଡ଼ାମଣି—ନୀଳାଚଳନାଥ ।

୭ । ଛଦସାରଥ—ପାଦପଦ୍ମ । ଛିଦ୍ର—ଛିଦ୍ର । ସେବା—ଯାଞ୍ଚା ।

୪

୯ । ଝଲନ୍ତି—ଖ୍ୟାତ ହୋଇଅଛି । ଝଞ୍ଜିକା—କ୍ଲେଶକର । ଗର୍ବୀ—ଗର୍ବବତୀ । ଝାଡିକା—ଝଟିତିରୁ ଝାଡ—ଝାଡିକା—ତହିଁରୁ ଯାଡିକା । ନିମିଷେ—ଅଳ୍ପକେ ।

୧୦ । ନାଗ ନୃପତି—ବାସୁକି । ସୁର—ସୂର୍ଯ୍ୟ । ନିଧିପତି—ସମୁଦ୍ର ।

୧୧ । ପଞ୍ଚସୁତ ମୋହିତ—ପାଣ୍ଡବଙ୍କ ଭାର୍ଯ୍ୟା, ଦ୍ରୌପଦୀ । ଟେକ—ବଡ଼ ।

୧୨ । ଦୋଷକୁ—ଦୋଷ ନିମିତ୍ତ । ଠୂଳ—ସ୍ଥୂଳ ଶବ୍ଦରୁ—ବନ୍ଧୁ । ଠଣା—ସୁଗଠିତ ।

୧୩ । ବ୍ରାହ୍ମଣ—ସୁଦାମା । କୁଦର—ବବର । 'ଡାକଲେ ଶୁଣି ଜିବନରେ' ମଧ୍ୟ ପାଠାନ୍ତର ହୋଇପାରେ । ଏଠାରେ ଜବନରେ ଅର୍ଥ ଶୀଘ୍ର । 'ଦେଣ୍ଟୁ ବା ନ ଶୁଣ ବ୍ୟାଜରେ' ଶେଷ ପଂକ୍ତିର ପାଠାନ୍ତର । ବ୍ୟାଜରେ—କପଟରେ, ଅଛଳରେ ।

୧୪ । ଡାକଲେ—ଜଟିତରେ, ଛପିତରେ ।

୧୫ । ବିପଦରଜ ହନ୍ତୁ—ବିପଦ ନାଶକାରୀ । ରେଖେ—ଲକ୍ଷିତରେ ।

୧୬ । ଏ ତାପ—ଅଧିଭୌତିକ (ଦେହର ପୀଡ଼ା) । ଅଧିଦୈବିକ (ଦୈବକୃତ ପୀଡ଼ା), ଅଧ୍ୟାତ୍ମିକ (ମାନସ ପୀଡ଼ା) । ପତିତ ଭୂଷଣ—ପତିତମାନଙ୍କ ମଧ୍ୟରେ ଶ୍ରେଷ୍ଠ । କରୁଣା ନିଧାନ—ଦୟାର ଭଣ୍ଡାର । କେତନ—ବାନା ।

୧୭ । ଯେହ୍ନେ ବିଜୁଳି ଘନ—ମେଘରେ ବିଜୁଳି ପରି । କମଳଦଳବନ—ପଦ୍ମ ପତ୍ରରେ ପାଣି ପରି ।

୧୮ । ବିବୁଧପତି ପଦ—ଇନ୍ଦ୍ର ପଦ । ଶ୍ରିୟା—ଲକ୍ଷ୍ମୀ ।

୧୯ । ବାସର—ଦିନ ।

୨୦ । ନୃପ କଦମ୍ବ—ନୃପ ସମୂହ ।

୨୧ । ଚଣ୍ଡଦଣ୍ଡ—ଶୁଣ୍ଢ ।

୨୨ । ଫୁଲ୍ଲେନ୍ଦୀବରେକ୍ଷଣ—ଫୁଟିଲା ନୀଳକମଳ ପରି ଆଖି ଯାହାଙ୍କର; ଫଣୀଶୟନ—ସର୍ପଶଯ୍ୟାରେ ଶାୟିତ ବିଷ୍ଣୁ ।

୨୩ । ଯାନ ଚରଣ—ରଥାଙ୍ଗ, ଚକ୍ର ।

୨୪ । ଦୋସର—ସଙ୍ଗୀ ସଖା । ମୃଗଧୃତ—ମୃଗାଙ୍କ ଚନ୍ଦ୍ର ।

୨୫ । ଦଣ୍ଡଧର—ଯମ, ବିପଦ କାଣ୍ଡ—ବିପଦ ମଧ୍ୟ ।

୨୬ । ରାମଚନ୍ଦ୍ରଙ୍କ ପଦ ଲାଗନ୍ତେ ଅହଲ୍ୟା ପଥର ଦେହ ଛାଡ଼ି ନିଜ ଦେହ ପାଇଥିଲେ । ରମା—ଲକ୍ଷ୍ମୀ । ଧରା—ପୃଥିବୀ ।

୨୯ । ବିଧୁର—ନାଶ ।

୩୦ । ଶେଷ—ଅନନ୍ତ, ବାସୁକି । ବିରଞ୍ଚି—ବ୍ରହ୍ମା । ସୂର—ସୂର୍ଯ୍ୟ । ବାସବ—ଇନ୍ଦ୍ର ।

୩୩ । ହେତୁ କର୍ମର ତୁମ୍ଭେ—ତୁମ୍ଭେ ସକଳ କାର୍ଯ୍ୟର କାରଣ ।

---

## ଘନଶ୍ୟାମ ଚଉତିଶା

୧ । କଇତବ—କପଟ ।

୨ । ଖାଇ ମରନ୍ତୁ·····ବିଷ ଖାଇ ଅବା ମରିଯାନ୍ତୁ, କିନ୍ତୁ ତୁମ୍ଭେ ଆମ୍ଭଙ୍କୁ ତୁମ୍ଭର ଅଧରାମୃତ ଦିଅଇ ଏପରି ଅକାଟ ପ୍ରାଣ କରିଅଛ ଯେ ବିଷ ଆଉ ଆମ୍ଭଠାରେ କାହିଁ କରିବ ନାହିଁ ।

୩ । ଗଳା ମର୍କତ ମାଳ······ପାଶ ପାଲଟି ପ୍ରାଣ ନେବ ପାଠାନ୍ତର । ଆରକୂଟ—ପିତ୍ତଳ ।

ଗୁଳ୍ମକଣ୍ଠି ପାଇଲା ଯାଗପଶୁ ପରାୟେ
ଅନ୍ତର୍ଦ୍ଦଶା ହେଉଛୁ ଦେଖି । ପାଠାନ୍ତର

ବଳି ପଡ଼ିବାକୁ ଯାଉଥିବା ମନୁର ଯାଗ ପଶୁର ଯେପରି ମନୋବେଦନା ଆମ୍ଭମାନଙ୍କର ତାହା ହେଉଅଛୁ ।

୪ । ଅନଙ୍ଗ ଭୁଜଙ୍ଗମ—କାମରୂପକ ସାପ । ଦଂସସୁତ—ଯମ ।

୭ । ଗ୍ରହପତି—ସୂର୍ଯ୍ୟ ।

୮ । ଶ୍ୟାମ ରତନ—ଶ୍ରୀକୃଷ୍ଣ ରୂପ ମଣି, ନୀଳମଣି । ସମ୍ପୁଟକ—ଫରୁଆ ।

୯ । ମଧୁର ରସ—ଶୃଙ୍ଗାର ରସ । ଝଷକେତୁ—କାମ ।

୧୧ । ଟେକ—ବଡ଼ ।

୧୨ । ଠାଠିକ—ମାଠିମୁଠି ।

୧୩ । ତକାଇତର ତୁମ୍ଭେ ଗୁରୁ······କଂସ ଦୂରରୁ ତକା ଅର୍ଥାତ୍ ଜବରଦସ୍ତି କରୁଅଛୁ । କିନ୍ତୁ ତୁମ୍ଭେ ତକାଇତ ମାନଙ୍କ ଗୁରୁ ଅର୍ଥାତ୍ କଂସକୁ ତୁମ୍ଭେ ସବତ୍ କରି ପାରନ୍ତ । କିନ୍ତୁ ତାହା ନ କରି ତକାଇତ କଥାରେ ପଡ଼ି ତକାଇତ ଅକ୍ରୂରକୁ ଆମ୍ଭେମାନେ ଆଡ଼ ଅର୍ଥାତ୍ ବାରଣ କରୁ କରୁ ତା ସଙ୍ଗରେ ଶକ୍ତିହୀନତାର ବାହାନା କରି ତୁମ୍ଭେ ଯେ ଯିବାକୁ ବାହାରିଅଛ ତା ଛକା ବା ଅତ୍ୟାଗ୍ରହ ନୁହେ କି ?

୧୪ । କମଳ ଦଳଗତ କମଳ—ପଦ୍ମ ପତ୍ରରେ ଜଳ ପରି ।

୧୫ । ଆଶୀବିଷ—ସର୍ପ ।

୧୬ । କର୍ପୂର, ପଇଡ଼ ପାଣି, ଲେମ୍ବୁରସ ଏକାଠେଇ ମିଶିଲେ ବିଷ ହୋଇଯାଏ । ଅକ୍ରୂର ହଂସ ମୂର୍ତ୍ତି……କ୍ଷୀର ନୀର ଏକାଠେଇ ମିଶିଥାଏ, ହଂସ ତାକୁ ଅଲଗା କରିଦିଏ । ସେହିପରି ଭୂମ୍ବର ଓ ଆମ୍ବର ଅଭେଦ ପ୍ରୀତିକୁ ଅକ୍ରୂର ଭିନ୍ନାଭିନ୍ନ କରି ଦେଉଅଛି ।

୧୮ । ନାମ ଅକ୍ରୂର କିନ୍ତୁ ବେଭାରରେ ଏ କ୍ରୂର, ଖଳ ବୃଦ୍ଧି । ଗ୍ରହ ବିଶେଷର ନାମ ମଙ୍ଗଳ, କିନ୍ତୁ ଫଳ ଦେଲାବେଳକୁ ସବୁ ଅମଙ୍ଗଳ ଏହାଠାରୁ । ଏମାନେ କପଟ ନାମ ଧାରଣ କରି ନିଜର ପ୍ରକୃତିକୁ ଲୁଚାଇ ଥାନ୍ତି । କିନ୍ତୁ ଦୁଷ୍ଟ ଲୋକଙ୍କୁ ବାଛିବା ଅର୍ଥାତ୍ ଦୋଷ ଦେବା ଉଚିତ ନୁହେ । ତାହାର ନାମରୁ ତାର ପ୍ରକୃତି ଆଗରୁ ଜଣା ଯାଇଥାଏ । ଚନ୍ଦ୍ର ସୂର୍ଯ୍ୟଙ୍କ ଗତାଗତ ବା ଆଚରଣ ଯେପରି ସମସ୍ତଙ୍କୁ ଜଣା ଦୁଷ୍ଟ ଲୋକର ଆଚରଣ ମଧ ତଦ୍ରୂପ ।

୨୦ । ଇଚ୍ଛା ପ୍ରାଣ—ଇଚ୍ଛା ମୃତ୍ୟୁ ।

୨୧ । ଫୁଲଧନ—କନ୍ଦର୍ପ ।

୨୨ । ଜଗତ ଯନ୍ତ୍ରକାର—ଜଗତର ସ୍ରଷ୍ଟା । ଅନ୍ତର କର ଯନ୍ତ୍ର ପ୍ରତିମା—ଅକ୍ରୂର ହାତର କ୍ରୀଡ଼ା ପୁତ୍ତଳିକା । ଯବନିକା, ଯବନୀ—ପରଦା । ନଟ—ନାଟୁଆ । (ଗୋପଲୀଳା ନାଟକୁ ଉପମା ଗୃହୀତ)

୨୩ । ରବି ଅଗ୍ନି ଶତ୍ରୁକୁ ଦୂରରୁ ମହାଗୁରୁ ମୂଳେ ସ୍ତୁତିରେ ଭାଷନ୍ତି, ପାଠାନ୍ତର । କିନ୍ତୁ ଉକ୍ତ ପାଠରେ ଯୁକ୍ତ ଅର୍ଥ ବୋଧ ଗମ୍ୟ ହେଉନାହିଁ ।

୨୧ । ବୋଷର—ଅନ୍ୟ ।

୩୨ । ଘଟିକ·····ପାଶରେ ଥିଲେ ଖଣ୍ଡ କ ଧରେ । ଦୂର ହେଲେ ତାହା କ ରେନାହିଁ ।

୩୪ । ଛଷହେ—ପ୍ରଚ୍ଛନରେ । ତାଙ୍କ ନୟନ·····ସେମାନଙ୍କ ଆଖିକୁ ଆଖି ବୋଲି କହିବା । ଅର୍ଥାତ୍ ସେହିମାନଙ୍କ ଆଖିହିଁ ସାର୍ଥ ।

---

## ଗୁଣ୍ଡିଚା ଭାବନା ଚଉତିଶା

୧ । ସଙ୍ଘାତ—ସଙ୍ଗାତ । କାମପାଳ—ବଳଦେବ ।

୨ । ଖଟାଙ୍ଗଧର—ମହାଦେବ । ହୁଳା—ମଶାଲ ।

୪ । ଗଜପତି—ପୁରୀର ଠାକୁର ରାଜା ।

୫ । ଅବଧାନ—ମନୋଯୋଗ ।

୬ । କଦମ୍ବ କୁସୁମ ପ୍ରାୟେ—ରୋମ ଟାଙ୍କୁରିଲା ।

୭ । ଛେଉ—ଖୋଉ ।

୮ । ବାର ସୁନ୍ଦରୀ—ଦେବଦାସୀ । ଝାମ୍ପିଥିବ—ବ୍ୟାପିଥିବ ।

୧୪ । ଚଳଦଳ—ପଲ୍ଲୀୟାର, ବଶଦ ।

୧୯ । ଧନ୍ୟ ଧରଣୀ ଫଣୀମଣି ବାସୁକି କମଠ ମଣ୍ଡୁକ ଭାବ—କମଠ=କଚ୍ଛପ ତା ଉପରେ ଫଣୀମଣି ସର୍ପଶ୍ରେଷ୍ଠ ବାସୁକି, ତା ଉପରେ ପୃଥିବୀ ଏ ତିନହେଁ ଯୋଗୋକ୍ତ ମଣ୍ଡୁକ ଭାବରେ ରହି ଅର୍ଥାତ୍ ସ୍ଥିର ରହି ବୈଷ୍ଣବୋଚିତ ବେଭାରରେ ଜଗନ୍ନାଥଙ୍କୁ ଧାରଣ ରୂପ ସେବା କରୁଅଛନ୍ତି ।

୨୮ । ଲକ୍ଷ୍ୟ ରହିତ—ଅନୁପମ । ଲକ୍ଷ୍ୟ—ଉପମା ।

---

## ସ୍ନାନ ସ୍ମରଣ ଚଉତିଶା

୨ । ଶୀତ ମୟୂଖ—ଚନ୍ଦ୍ର ।

୩ । ଗଞ୍ଜି ନୋହିବ—ମନଦୁଃଖରେ ନ ପଡ଼ିବ ।

୪ । ବିଷ୍ଣୁପଦ—ଗଗନ ମଣ୍ଡଳ । ଘନ ମୁଦ—ମେଘର ଗର୍ଜ୍ଜ ଓ ଅନନ୍ଦ ଲୁହ ହୁଏ ।

୧୩ । ତାଳମୃଗ—ମାଙ୍କଡ଼ ।

୧୫ । ଯନ୍ତ୍ରାଯନ୍ତ୍ର—ଲରପର ।

୧୭ । ଯୋଗେନ୍ଦ୍ରା—ବ୍ରହ୍ମା ।

୧୯ । ଚତ୍ରାସ—ତ୍ରାସ (ଛତ ସଙ୍ଗର ତ୍ରାସ)

୨୨ । ଫଣୀଧର—ମହାଦେବ ।

୨୪ । ଧଙ୍କ—ବକ୍ର ।

୩୨ । ଉଚ୍ଛାହା—ଉତ୍ସାହ ।

୨୩ । ବାହାରେ—ଛଡ଼ା ।

୩୪ । ଶ୍ମାନୁ—ଶ୍ମଶ୍ରୁ ।

---

## ଜଗବନ୍ଧୁ ଜଣାଣ ଚଉତିଶା

୮ । ନାମନ୍ତ—ନାମସବୁ ( 'ନ୍ତ' ପୁରୁଣା ସାହିତ୍ୟରେ ବହୁବଚନର ଚିହ୍ନ

୧୦ । କଳ୍ପ କଳ୍ପ—ଯୁଗ ଯୁଗ ।

---

## ସୀତାନୁଚିନ୍ତା ଚଉତିଶା

୨ । ଖେଦ—ଦୁଃଖ । ଖଣ୍ଡେନ୍ଦୁ—ବଙ୍କଚନ୍ଦ୍ରକଳା ।

୫ । ଦେବା—ଦେବତା ।

୭ । ଠାଣ—ଠାଣେ ।

୯ । ଝାଡ଼—ବନ ।

୧୦ । ବାସବଧନୁ—ଇନ୍ଦ୍ରଧନୁ ।

୧୧ । ଟାହିଟମାଳି—ଅଙ୍କୁ। ପରିହାସ । ନେଙ୍କଧର ଅରିହ—କାମ-
ଦେବ ।

୧୩ । ଡଗର—ଦୂର୍ଗ ।

୧୮ । ସାହୁ—ସାହା ।

୨୫ । ସାଦ୍ଧର—ସମୁଦ୍ର ।

୨୮ । ଲୁଲଡ—ବନସ୍ପୀ ।

୨୯ । ବେଗିଅଇଣ—ଶୀଘ୍ର ।

---

## ରାମଚନ୍ଦ୍ର ଜଣାଣ ଚଉତିଶା

୯ । ଝଙ୍କ୍ରକା—କ୍ଲେଶ ।

୧୦ । ନାମ—ନୟନ । ଛାୟାବର—ସୂର୍ଯ୍ୟ ।

୧୬ । ଠସ—ଅଙ୍କ୍ଷ । ।

୨୦ । ଢଗା—ବାନା ।

୨୨ । ଫକର—ଉପାୟ ।

---

## ବଉଲ ଚଉତିଶା

୩ । ଦେହୁ—ଦେହ ।

୧୧ । ନଙ୍କଧର ଅରିହ—ଶିବଙ୍କ ଶତ୍ରୁ ମଦନ ।

୧୨ । ଥମ୍ବର—ସ୍ଥିର ।

---

## ସପ୍ତରାଗ ଚଉତିଶା

୧ । କଞ୍ଜ ଗଞ୍ଜନଦୃଶୀ—ପଦ୍ମଠାରୁ ସୁନ୍ଦର ନେତ୍ର ଯେଉଁ—
ରମଣୀର ।
୨ । ଓପ୍ରୋଧ—ଦସ୍ମାମାସ୍ମା ।

---

୧ । ଚଟୁଳ—ସୁଗଠିତ ।
୨ । ଛେମାବର—କ୍ଷମାଶୀଳା ।
୩ । ଜାଣ୍ମଣି—ବିବେକବତୀ ।

---

୧ । ଝାଳଦେଲେ—ଭାଙ୍ଗିଦେଲେ ।
୨ । ଅଲଗା—ଭଗ୍ନ ।
୩ । ଡେଲାଇ—ଭାଙ୍ଗି ।

---

୨ । ଥାଣ୍ ମୋହନ୍ତ—ଶିବଧୈର୍ଯ୍ୟନାଶିନୀ
୩ । ଦେଠ ମୁଖ—ନତବଦନ ।
୫ । ନୋକ—ଲୋକ ।

---

୧ । ପରାରମ୍ଭ—ଆଲିଙ୍ଗନ ।
୪ । ଭମାଙ୍ଗୀ—ସୁନାଗୋଷ୍ଠ ।

---

୩ । ଲହୁଲୀ ବୟସୀ—କୋମଳ ଯୌବନା ।
୪ । ବାଧ—ବାଧା ।

---

୧ । ହର ପର ଶର—କାମଶର । ଦର—ଡର ।
କ୍ଷେମ—ମଙ୍ଗଳ ।

---

## ବୋଲି ଚଉତିଶା

୧୬ । ଘୁର ଘୁଟି—ଘନ ଘନ ।

---

## ମାୟାମୃଗ ଚଉତିଶା

୧୧ । ପକ୍ଷୀ—ପଷୀ ।

୧୨ । ଖାପୁ—ଖାପରୁ

୧୪ । ରାଉବର୍ଣ୍ଣି—ନାଲବର୍ଣ୍ଣି ।

୧୫ । ଅଶକତ—ଦୁର୍ବଳ ।

୨୧ । ପ୍ରମ—ପରମ ।

୨୨ । ଅପ୍ରେମାନ—ଅଲଙ୍କାରପରୁ । ଘୂରୁଣା—ଆନନ୍ଦ ।
ଫାନ୍ଦ—ଫାଶ ।

୨୭ । ଓହାଡ଼—ପଛ ।

୨୮ । ଲେଉଟା—ଫେର ।

୩୨ । ସଦଳ—ଦଳବଳ ସହିତ ।

୩୩ । ହାଯା—ଗହଳ ।

୩୪ । ରାମରାମ୍ଭ—ରାମରାଜ୍ଞ ।

---

